# ହରିଭକ୍ତିଚନ୍ଦ୍ରୋଦୟ ।

(ଭକ୍ତି ଗ୍ରନ୍ଥ)



ଭକ୍ତ କବି ୰ ଭୀମ ଦାସଙ୍କ ଦ୍ୱାରା
ବିରଚିତ ।

---

ଶ୍ରୀ ପାର୍ବତୀଚରଣ ଦାସ ବି. ଏଙ୍କର
ଭୂମିକା ସହ
ଶ୍ରୀ ବ୍ରଜସୁନ୍ଦର ଦାସ ବି. ଏଙ୍କଦ୍ୱାରା
ପ୍ରକାଶିତ ।

---

ପ୍ରଥମ ସଂସ୍କରଣ ।

PRINTED & PUBLISHED
BY
B. S. DAS.
MUKUR PRESS
CUTTACK.
1917.

ମୂଲ୍ୟ ଏକ ଟଙ୍କା ।

ପ୍ରଥମ ପୃଷ୍ଠାରେ ଅମ୍ଭର ସ୍ୱାକ୍ଷର ଦେଖି କ୍ରୟ କରନ୍ତୁ । ଅନ୍ୟଥା ତାହା ଚୋର
[illegible] ବୋଲି ଜାଣିବେ । ପ୍ରକାଶକ

# ମୁକୁର ପୁସ୍ତକାଳୟ ।

ଚୌଧୁରୀବଜାର, କଟକ ।

**ସିଦ୍ଧାନ୍ତଦର୍ପଣ**— ( ମହାମହୋପାଧ୍ୟାୟ ଶ୍ରୀ ଚନ୍ଦ୍ରଶେଖର ସିଂହ ସାମନ୍ତଙ୍କ କୃତ ଜ୍ୟୋତିଷ ଗ୍ରନ୍ଥ) ଟ ୩ ୧

Mr. M. S. Das' Presidential Address at Bihar ଟ ୦ ୵

ସଚିତ୍ର ଶିଶୁବର୍ଣ୍ଣମାଳା ଟ ୦ ⁄

**ହରିଭକ୍ତି ଚନ୍ଦ୍ରୋଦୟ (ଭକ୍ତିଗ୍ରନ୍ଥ)** ଟ ୧ ୧

ବାରବାଟୀ ଦୁର୍ଗ ... ... ଟ ୦ ।୵

ଗୁରୁଶିଷ୍ୟତତ୍ତ୍ୱସଂହିତା (ଭକ୍ତିଗ୍ରନ୍ଥ) ଟ ୦ ⁄୍

ବୃଦ୍ଧ କବି ଶ୍ରୀ ଫକୀରମୋହନ ସେନାପତିଙ୍କ ପ୍ରଣୀତ—

ପୂଜା ... ଟ ୦ ୵

ଉପହାର ... ... ଟ ୦ ।

ଗଣ୍ଡିପୁଅ ଅନନ୍ତା ( ଗଳ୍ପ ) ଟ ୦ ୵

ପୁନର୍ମୂଷିକୋଭବ ( ଗଳ୍ପ ) ... ଟ ୦ ୵୬—

ଫୁଲବଉଳବେଣୀ ( ବାଳକୃଷ୍ଣ ପଟ୍ଟନାୟକ ) ଟ ୦ ⁄

ସୁଲକ୍ଷଣା—ଅଭିମନ୍ୟୁ ସାମନ୍ତସିଂହାରଙ୍କ କୃତ ଟ ୦ ୵

ବାଣୀ ( ଶ୍ରୀ ଦୀନବନ୍ଧୁ କାବ୍ୟରଞ୍ଜନ ପ୍ରଣୀତ ) ଟ ୦ ୵

ଅଦ୍ଭୁତ ଆଦର୍ଶ—( ପ୍ରହସନ ) ଟ ୦ ୵

ଅଶ୍ୱଚିକିତ୍ସା ... ଟ ୦ ୵

ଶାନ୍ତି ସଖା ( କାବ୍ୟଗ୍ରନ୍ଥ ) ଟ ୦ ୵

ବୁଦ୍ଧବଧ ନାଟକ ( ଜଗନ୍ନାଥ ପଣ୍ଡା ) ଟ ୦ ⁄

ପୈଶାଚିକକାଣ୍ଡ ( ଐତିହାସିକ ଗଳ୍ପ ) ... ଟ ୦ ୵

ଅନ୍ୟାନ୍ୟ ସମସ୍ତ ପୁସ୍ତକାଦି ଏଠାରେ ମିଳେ ।

ପତ୍ର ଲେଖିବାର ଠିକଣା ;— ଶ୍ରୀ ବ୍ରଜସୁନ୍ଦର ଦାସ ବି, ଏ,
ପ୍ରୋପ୍ରାଇଟର, ମୁକୁର ପ୍ରେସ,
ଚୌଧୁରୀବଜାର, କଟକ ।

# ହରିଭକ୍ତିଚନ୍ଦ୍ରୋଦୟର ସ୍ଥୂଳମର୍ମ ।



କବିବର ରାମଦାସ ଯେ ଶ୍ରୀହରିଭକ୍ତିଚନ୍ଦ୍ରୋଦୟ ଗ୍ରନ୍ଥ ରଚନା କରିଅଛନ୍ତି ତାହାର ପ୍ରଥମ ଅଧ୍ୟାୟରେ ସେ ନିଜର ଉଦ୍ଦେଶ୍ୟ ଉଲ୍ଲେଖ କରିଅଛନ୍ତି । ତହିଁରୁ ଜଣାଯାଏ, ତାଙ୍କର ଏହି ମହାନ୍ ଉଦ୍ଦେଶ୍ୟ ଥିଲା—ଯେଉଁ ଭକ୍ତିଗ୍ରନ୍ଥମାନ ଗୋସ୍ୱାମୀମାନେ ସଂସ୍କୃତରେ ଲେଖି ଯାଇଅଛନ୍ତି, ସାଧାରଣ ଲୋକେ ତାହାର ମର୍ମ ଗ୍ରହଣ କରିବାକୁ ସକ୍ଷମ ନୁହନ୍ତି । ମହାତ୍ମା ଶ୍ରୀବୃନ୍ଦାବନ ଦାସ, ଶ୍ରୀଲୋଚନ ଦାସ ଓ ଶ୍ରୀକୃଷ୍ଣ ଦାସ କବିରାଜ ଓ ତତ୍ପରବର୍ତ୍ତୀ 'ଭକ୍ତିଗ୍ରନ୍ଥ ପ୍ରକାଶକ ଶ୍ରୀଶ୍ରୀନିବାସ ଆଚାର୍ଯ୍ୟ ପ୍ରଭୃତି ଯେଉଁ ଭକ୍ତିଗ୍ରନ୍ଥମାନ ପ୍ରକାଶ କରିଅଛନ୍ତି ତାହା ସରଳ ହେଲେହେଁ ଭାଷା ବଙ୍ଗଳା ଥିବାରୁ ସମସ୍ତ ଓଡ଼ିଆମାନଙ୍କ ପକ୍ଷରେ ସୁବିଧାଜନକ ନୁହେଁ । ଅତି ଅଳ୍ପ ସଂଖ୍ୟକ ଓଡ଼ିଆ ବଙ୍ଗଳା ପଢ଼ି ସେ ପୁସ୍ତକରତ୍ନମାନଙ୍କର ସଦ୍‌ବ୍ୟବହାର କରି ପାରୁଥିଲେ । ଏହିସବୁ ବାଧାକୁ ଅତିକ୍ରମ କରିବା ମାନସରେ କବି ସେ କଠିନ ଭକ୍ତିଗ୍ରନ୍ଥର କେତେକ ମର୍ମ ସରଳ ଓଡ଼ିଆ ପଦ୍ୟରେ ରଚନା କରି ଏହି ଗ୍ରନ୍ଥ ପ୍ରକାଶ କରିଅଛନ୍ତି କିନ୍ତୁ ବର୍ତ୍ତମାନ ମୁଦ୍ରା-ଯନ୍ତ୍ର ଆବିଷ୍କୃତ ହୋଇ ଥିବାରୁ ଛାପା ପୁସ୍ତକର ସମସ୍ତେ ଆଦର କରୁ ଅଛନ୍ତି । ଏ ଭକ୍ତିଗ୍ରନ୍ଥମାନ ତାଳପତ୍ରରେ ଲେଖା ହୋଇଥିବାରୁ ସମୁଦ୍ର ଗର୍ଭରେ ମୁକ୍ତାପରି ପଡ଼ି ରହିଅଛି । ବର୍ତ୍ତମାନ ଶ୍ରୀଯୁକ୍ତ ବ୍ରଜସୁନ୍ଦର ବାବୁ ଏହା ପ୍ରକାଶ କରିବାକୁ ଯାଇ ସିନ୍ଧୁଗର୍ଭରୁ ଗୋଟିଏ ଅମୂଲ୍ୟମୁକ୍ତା ଉତ୍ତୋଳନ କରି ସର୍ବ ସମକ୍ଷରେ ଦେଖାଇବାର ସୁବିଧା କରିଦେଲେ । ଆଶା କରାଯାଏ ଓଡ଼ିଆ ଗ୍ରାହକମାନେ ଏ ଅମୂଲ୍ୟ ମୁକ୍ତାର ଗ୍ରାହକ ହୋଇ ଭକ୍ତିମାହାତ୍ମ୍ୟ ଅକ୍ଳେଶରେ ଅନୁଭବ କରି ପାରିବେ । ଏ ମୁକ୍ତାର ବିଶେଷତା ଏହି ଯେ ଏଥିରୁ ଅବିରଳ ସୁଧା କ୍ଷରିତ ହେଉଅଛି । ସେ ସୁଧା ପାନ କଲେ ମାନବ ଅମରତ୍ୱ ଲାଭ କରି ଚିରକାଳ ଗୋଲକଧାମରେ ଶ୍ରୀକୃଷ୍ଣ-ସେବା-ସୁଖ ଅନୁଭବ କରି ଚିଦାନନ୍ଦରେ ବିଚରଣ କରିବ ।

## ପ୍ରଥମ ଅଧ୍ୟାୟ ।

ପ୍ରଥମ ଅଧ୍ୟାୟରେ କବିବର ତତ୍ତ୍ୱବର୍ଗର ସମ୍ବନ୍ଧରେ ଲେଖି ଅଛନ୍ତି; ତାହାର ସ୍ଥୂଳମର୍ମ ଏହି କି, ଭଗବାନ ଶ୍ରୀକୃଷ୍ଣ ସମସ୍ତ ତତ୍ତ୍ୱର ଆଦି କାରଣ । ଅପର ସମସ୍ତ ତାଙ୍କର କଳା ବା ଅଂଶ ବା ବିଭୂତି । ସମସ୍ତ ଭଗବାନଙ୍କଠାରୁ ଉତ୍ପତ୍ତି ହୁଏ ଓ ତାଙ୍କରିଠାରେ ପୁଣି ଲୟପ୍ରାପ୍ତ ହୁଏ । ବ୍ରହ୍ମସଂହିତା, ବ୍ରହ୍ମବୈବର୍ତ୍ତ ପୁରାଣ ଓ ପଦ୍ମପୁରାଣାଦିରେ ଏହାର ଭୂରି ଭୂରି ପ୍ରମାଣ ରହିଅଛି । ହରେକୃଷ୍ଣ-ମହାମନ୍ତ୍ର ଯେଉଁ ତିନିଗୋଟି ନାମରେ ଗଠିତ ସେ ତିନି ନାମର ଯାଦ୍ରୂର୍ଥାନୁସାରେ ସେହି ଭଗବାନ ଶ୍ରୀକୃଷ୍ଣଙ୍କୁହିଁ ବୁଝାଏ, ଯଥା— ଭୃତ୍ୟମାନଙ୍କ ପାପ ହରିବାରୁ ହରି, ଭୃତ୍ୟଙ୍କ ପାପ ଆକର୍ଷଣ କରି ନିଷ୍ପାପରେ ନିଜ ନିକଟକୁ ନେବାରୁ କୃଷ୍ଣ ଓ ଯୋଗୀମାନେ ମନେ ମନେ ଯାହାଙ୍କୁ ରମଣ କରନ୍ତି ସେ ରାମ ଅର୍ଥାତ୍ ଯୋଗୀଙ୍କ ହୃଦୟରେ ରମଣୀୟ ହୋଇ ପ୍ରକାଶିତ ହୁଅନ୍ତି ବୋଲି ରାମ । ସେହି ଭଗବାନ୍ ଶ୍ରୀକୃଷ୍ଣ ସମସ୍ତ ଦେବମାନଙ୍କର ଠାକୁର ଓ ନାରାୟଣ ଏହାଙ୍କର ଅଂଶ । ମହତ୍, ଅହଙ୍କାର, ପ୍ରକୃତି ଆଦି କରି ଯେ ଚତୁର୍ବିଂଶତି ତତ୍ତ୍ୱ, ଭଗବାନ୍ ଶ୍ରୀକୃଷ୍ଣ ଏସମସ୍ତର ଆଦିକାରଣ ଅଟନ୍ତି ।

ଆତ୍ମାନ୍ତର୍ଯ୍ୟାମୀ ପୁରୁଷରୂପେ ଯେ ସମସ୍ତ ଜୀବରେ ବର୍ତ୍ତମାନ, ଯୋଗୀମାନେ ଯାହାକୁ ପରମାତ୍ମା ବୋଲି ହୃଦୟ ମଧ୍ୟରେ ଷଟ୍‌ଚକ୍ର ଉପରେ ସହସ୍ରଦଳ କମଳରେ ସତତ ଚିନ୍ତା କରନ୍ତି ସେ ସେହି ଶ୍ରୀକୃଷ୍ଣଙ୍କର ଅଂଶ । ବ୍ରହ୍ମଜ୍ଞାନମାନେ ଯେଉଁ ବ୍ରହ୍ମର ଭାବନା କରନ୍ତି ତାହା ଶ୍ରୀକୃଷ୍ଣଙ୍କର ଅଙ୍ଗପ୍ରଭା । ଭଗବାନ୍ ଶ୍ରୀକୃଷ୍ଣ ଗୋଲୋକରେ ସର୍ବଦା ଗୋପ ଗୋପୀମାନଙ୍କ ସହି ନିତ୍ୟ ଲୀଳାରେ ରତ । ତାଙ୍କ କଳା ଓ ଅଂଶ ଆଦିଦ୍ୱାରା ସୃଷ୍ଟିର କାର୍ଯ୍ୟ ଚଳୁଅଛି ।

ବିରାଟ୍ ପୁରୁଷ, ଯାହାଙ୍କ ଲୋମ ମୂଳରେ ଶତ ଶତ ବ୍ରହ୍ମାଣ୍ଡ ରହି ଅଛି, ସେ ମଧ୍ୟ ସେହି ଶ୍ରୀକୃଷ୍ଣଙ୍କର କଳା । ଶ୍ରୀକୃଷ୍ଣହିଁ ସର୍ବକାରଣର କାରଣ ଅତଏବ ମୂଳ । ଅବତାରମାନେ କୃଷ୍ଣଙ୍କଠାରୁ ଅଂଶ ରୂପରେ ଆସି ସୃଜନ ପାଳନାଦି କାର୍ଯ୍ୟ ସମାଧାନ କରନ୍ତି ଓ ତତ୍ପରେ

ପୁଣି ଶ୍ରୀକୃଷ୍ଣଙ୍କ ଅଙ୍ଗରେ ଲୟପ୍ରାପ୍ତ ହୁଅନ୍ତି । ଏହା ବ୍ରହ୍ମସଂହିତାରେ ସବିଶେଷ ବର୍ଣ୍ଣିତ ହୋଇଅଛି ।

ସେହି ଯେ ସମସ୍ତଙ୍କର ମୂଳ ଶ୍ରୀକୃଷ୍ଣ ସେ ନିତ୍ୟଗୋଲୋକରେ ନିତ୍ୟ ଲୀଳା ବିସ୍ତାର କରି ନିତ୍ୟ ବର୍ତ୍ତିମାନ ରହିଅଛନ୍ତି । ତାଙ୍କର ବର୍ଣ୍ଣ ନୀଳ ଇନ୍ଦୀବର ସଦୃଶ । ସେ ଦ୍ୱିଭୁଜ ଓ ମୁରଲୀଧର । ସହସ୍ର ଦଳ ପଦ୍ମାକାର ଧାମର କର୍ଣ୍ଣିକା ମଧ୍ୟରେ ବୃଷଭାନୁ ଦୁହିତା ଶ୍ରୀରାଧାଙ୍କ ସଙ୍ଗେ ସର୍ବଦା ବିରାଜିତ ଥାଇ ଲୀଳା କରୁଅଛନ୍ତି । ଶ୍ରୀକୃଷ୍ଣ ଓ ଶ୍ରୀରାଧା ଏ ଦୁହେଁ ସମସ୍ତଙ୍କର ଆଦିକାରଣ । ଶ୍ରୀରାଧାଙ୍କର ବର୍ଣ୍ଣ ତପ୍ତକାଞ୍ଚନ ସଦୃଶ । ସେ ଶ୍ରୀକୃଷ୍ଣଙ୍କର ଅତୀବ ମନୋହାରିଣୀ ଓ ମନ ସର୍ବଦା କୃଷ୍ଣଙ୍କଠାରେ ଅର୍ପଣ କରି ରହିଅଛନ୍ତି । ରାଧାକୃଷ୍ଣଙ୍କର ଯେ ପ୍ରଣୟ ସେ ନିତ୍ୟ ନୂତନ । ଉଭୟ ପରସ୍ପରଙ୍କ ସୁଖଦାୟୀ । ସେଠାରେ ନିତ୍ୟସିଦ୍ଧା ଗୋପୀମାନେ ଶ୍ରୀରାଧାକୃଷ୍ଣଙ୍କ ସେବାରେ ନିୟତ ରତ ଅଛନ୍ତି ।

ଏହି ଲୀଳା ଗୋଲୋକରେ ନିତ୍ୟ ବର୍ତ୍ତମାନ, କିନ୍ତୁ ନରଲୋକରେ ଅପ୍ରକଟ ଥିଲା । ଏହା ନରଲୋକରେ ପ୍ରକଟ କରିବାକୁ ଇଚ୍ଛା କରି ଶ୍ରୀକୃଷ୍ଣ, ଶ୍ରୀରାଧା ଓ ଗୋପଗୋପୀମାନେ ଦ୍ୱାପର ଯୁଗରେ ଶ୍ରୀବୃନ୍ଦାବନରେ କୃଷ୍ଣ ଇଚ୍ଛାରେ ପ୍ରକାଶ ପାଇ ଲୀଳା କରନ୍ତି । ସ୍ୱୟଂ ପୂର୍ଣ୍ଣବ୍ରହ୍ମ ଶ୍ରୀକୃଷ୍ଣ ଦେବକୀଗର୍ଭସମ୍ଭୂତ ନୁହନ୍ତି; ତାଙ୍କ ଅଂଶ ବାସୁଦେବ ଚତୁର୍ଭୁଜ ମୂର୍ତ୍ତିରେ ଶଙ୍ଖ ଚକ୍ର ଗଦା ପଦ୍ମ ଧାରଣ କରି କିରୀଟ କୁଣ୍ଡଳରେ ଶୋଭିତ ହୋଇ ଦେବକୀଙ୍କଠାରେ ଆବିର୍ଭୂତ ହୁଅନ୍ତି ଓ ସେହି ସମୟରେ ଗୋକୁଳରେ ଶ୍ରୀକୃଷ୍ଣ ମଧ୍ୟ ନନ୍ଦଘରେ ପ୍ରକାଶିତ ହେବାରୁ ବସୁଦେବ ବାସୁଦେବଙ୍କୁ ସେଠାକୁ ନେଇ ଯାଆନ୍ତେ ଉଭୟ (ଅଂଶ ଓ ଅଂଶୀ) ମିଳି ଏକ ହୋଇ ଯାଆନ୍ତି ଓ ବସୁଦେବ ଯଶୋଦାଗର୍ଭସମ୍ଭୂତ ଦେବୀମୂର୍ତ୍ତି ଗ୍ରହଣ କରି ମଥୁରାକୁ ଫେରି ଆସନ୍ତି । ଏହା ଶ୍ରୀମଦ୍‌ଭାଗବତର ପ୍ରକୃତ ଅର୍ଥ ଅଟେ ଓ ଗୋସ୍ୱାମୀମାନେ ଏହା ଉତ୍ତମରୂପେ ବ୍ୟାଖ୍ୟା କରି ଦେଖାଇଅଛନ୍ତି ।

---

## ଦ୍ୱିତୀୟ ଅଧ୍ୟାୟ ।

### (ଭକ୍ତି ଲକ୍ଷଣ)

ଶ୍ରୀକୃଷ୍ଣ ସମ୍ବନ୍ଧୀୟ ଅନୁକୂଳ ଅନୁଶୀଳନକୁ ଭକ୍ତି ବୋଲିଯାଏ ଅର୍ଥାତ୍ କଂସ ଶିଶୁପାଳାଦିଙ୍କର କୃଷ୍ଣ ସମ୍ବନ୍ଧରେ ଯେ ଶତ୍ରୁଭାବର ଚିନ୍ତା ତାହା ପ୍ରତିକୂଳ ଅନୁଶୀଳନ, ଅନୁକୂଳ ଅନୁଶୀଳନ ନୁହେ । ସେ ଅନୁଶୀଳନ ପୁଣି ଜ୍ଞାନକର୍ମାଦିବିବର୍ଜିତ ହେବା ଆବଶ୍ୟକ ; ଜ୍ଞାନ ଶବ୍ଦର ଅର୍ଥ ନିର୍ଭେଦ ବ୍ରହ୍ମଜ୍ଞାନ, ଭଜନୀୟ ବସ୍ତୁର ଅନୁସନ୍ଧାନ ରୂପ ଜ୍ଞାନ ତାହାର ଅର୍ଥ ନୁହେ ଓ କର୍ମ ଶବ୍ଦଦ୍ୱାରା ଏଠାରେ ଭଜନୀୟ ବସ୍ତୁର ପରିଚର୍ଯ୍ୟାକୁ ବାରଣ ନ କରି ସ୍ମାର୍ତ୍ତ ନିତ୍ୟନୈମିତ୍ତିକାଦି କର୍ମକୁ ବାରଣ କରୁଅଛନ୍ତି । ସେ ଅନୁଶୀଳନ ପୁଣି ଭକ୍ତିଛଡ଼ା ଅନ୍ୟ ସମସ୍ତ ଅଭିଳାଷ ରହିତ ହେବା ଆବଶ୍ୟକ । ଏହିପରି ଭକ୍ତିକୁ ଉତ୍ତମା ଭକ୍ତି ବୋଲିଯାଏ । ନାରଦ ପଞ୍ଚରାତ୍ରରେ ମଧ୍ୟ ସର୍ବ ଉପାଧି ବିନିର୍ମୁକ୍ତ ଅର୍ଥାତ୍ ଫଳକାମନା ରହିତ ଇନ୍ଦ୍ରିୟଗଣଦ୍ୱାରା ହୃଷୀକେଶ ଶ୍ରୀକୃଷ୍ଣଙ୍କର ସେବାକୁ ଭକ୍ତି ବୋଲି ବର୍ଣ୍ଣନା କରି ହୋଇଅଛି ଏବଂ ଗ୍ରନ୍ଥକର୍ତ୍ତା ଶ୍ରୀରୂପ ଗୋସ୍ୱାମୀ କୃତ ରସାମୃତସିନ୍ଧୁ ନାମକ ଗ୍ରନ୍ଥ ଅବଲମ୍ବନ କରି ଏ ଗ୍ରନ୍ଥ ରଚନା କରିଥିବାର ସ୍ପଷ୍ଟ ପ୍ରତୀୟମାନ ହେଉଅଛି; ମୂଳ ଗ୍ରନ୍ଥରେ "ଜ୍ଞାନ କର୍ମାଦି" ଲେଖାଅଛି ଓ ଆଦିଶବ୍ଦର ଅର୍ଥ ଟୀକାକାର ବୈରାଗ୍ୟ-ସାଙ୍ଖ୍ୟାଭ୍ୟାସ ଆଦି ବୋଲି ଲେଖି ଅଛନ୍ତି ଅର୍ଥାତ୍ ଭକ୍ତିରେ ଏମାନ ମଧ୍ୟ ବର୍ଜନୀୟ । ତେବେ ଶ୍ରୀରାଧାକୃଷ୍ଣ ପାଦପଦ୍ମସ୍ମରଣାଦି ଚିତ୍ତ ସଂଯୋଗକୁ ଏଥିଦ୍ୱାରା ବାରଣ କରି ହେଉ ନାହିଁ ।

ଫଳକାମନାଶୂନ୍ୟତାହିଁ ଭକ୍ତିର ପ୍ରଧାନ ଲକ୍ଷଣ । ତାହା ବିଶଦଂ ଭାବରେ ବୁଝିବା ଆବଶ୍ୟକ । ବ୍ରାହ୍ମଣକୁ ବ୍ରତ କରିବା କିମ୍ବା ପୁଷ୍କରିଣୀ ଖୋଳାଇବା ଏମାନ କର୍ମକାଣ୍ଡର ଅନ୍ତର୍ଭୁକ୍ତ । ଭକ୍ତ କି ଏ କର୍ମମାନ ଏକାବେଳକେ କରିବେ ନାହିଁ ? ନା, ମୁଁ ତାର ଏହି ଅର୍ଥ ଶାସ୍ତ୍ରସମ୍ମତ ମନେ କରୁଅଛି, ଅର୍ଥାତ୍ ଫଳ କାମନାରେ ବ୍ରାହ୍ମଣ ବ୍ରତ କରାଇବା କିମ୍ବା ପୁଷ୍କରିଣୀ ଖୋଳାଇବା ଭକ୍ତିପଥର ବାଧକ, ତେଣୁ ବର୍ଜନୀୟ । କିନ୍ତୁ ଯଦି ଜଣେ ବ୍ରାହ୍ମଣ ଦରିଦ୍ର ହେତୁ ବ୍ରତ ହୋଇ ପାରୁ ନାହିଁ

ଦିଷ୍ଟ୍ୟପରବଶ ହୋଇ ଫଳକାମନାକୁ ଏକାବେଳେ ମନରୁ ଦୂର କରି ସେ ବ୍ରାହ୍ମଣବାଳକର ବ୍ରତର ବ୍ୟୟଭାର ଯଦି କେହି ବହନ କରେ ତେବେ ତାହାର ସେ କାର୍ଯ୍ୟ ଭକ୍ତିର ବାଧକ ନ ହୋଇ ବରଂ ପୋଷକ ହେବ । ସେହିପରି ଫଳକାମନାରେ ପୁଷ୍କରିଣୀ ଖୋଳାଇଲେ ତାହା ଭକ୍ତିର ବାଧକ ହେବ କିନ୍ତୁ ଜଳର ଅଭାବ ମୋଚନ ପାଇଁ ଯଦି କେହି ପୁଷ୍କରିଣୀ ଖନନ କରାଏ ଓ ଫଳକାମନା ତାର ନ ଥାଏ ତେବେ ସେ କାର୍ଯ୍ୟ ଭକ୍ତିର ବାଧକ ହେବ ନାହିଁ । କର୍ମକାଣ୍ଡ ବର୍ଜନର ଦୋହାଇ ଦେଇ ଲୋକହିତ କାର୍ଯ୍ୟରୁ କ୍ଷାନ୍ତ ହେବା ଭକ୍ତ ପକ୍ଷରେ ବିଧେୟ ନୁହେଁ, କାରଣ ଜୀବରେ ଦୟା ଭକ୍ତିର ଏକ ପ୍ରଧାନ ସାଧନ ବୋଲି ମହାପ୍ରଭୁ ଶ୍ରୀମୁଖରେ କହିଯାଇ ଅଛନ୍ତି ।

ଇନ୍ଦ୍ରିୟମାନଙ୍କୁ କୃଷ୍ଣ ସେବାରେ ଲଗାଇବା ଆବଶ୍ୟକ । ଏଥିରେ ମଧ୍ୟ ବୁଝି ନ ପାରି ଅନେକଙ୍କର ଅନେକ ଭ୍ରାନ୍ତ ମତ ଦେଖାଯାଏ । ହସ୍ତଦ୍ୱାରା ମନ୍ଦିର ମାର୍ଜନ, ପୁଷ୍ପଚୟନ, ଶ୍ରୀଗୁରୁ ବୈଷ୍ଣବ ସେବନ, ପଦଦ୍ୱାରା ତୀର୍ଥ ଭ୍ରମଣ ଓ ସେବା କାର୍ଯ୍ୟ ସମ୍ପାଦନ, ଜିହ୍ୱାଦ୍ୱାରା ହରିଗୁଣ କୀର୍ତ୍ତନ ଓ ପ୍ରସାଦ ସେବନ, ଚକ୍ଷୁଦ୍ୱାରା ଶ୍ରୀମୂର୍ତ୍ତି ଦର୍ଶନ ଓ ଭଗବତ୍ ଶାସ୍ତ୍ର ଅଧ୍ୟୟନ; ନାସାଦ୍ୱାରା ପ୍ରସାଦ ପୁଷ୍ପାଦିର ଗନ୍ଧ ଗ୍ରହଣ, ମନ ମଧ୍ୟରେ ହରି ଲୀଳା ସ୍ମରଣ ଏହିପରି କୌଣସି ପ୍ରକାରେ ଦେହର ସମସ୍ତ ଅଙ୍ଗକୁ ହରି ସେବାରେ ଲଗାଇବା ଭକ୍ତର ସର୍ବତୋଭାବେ ବିଧେୟ । ଏମନ୍ତ କି ମଳ ମୂତ୍ର ତ୍ୟାଗାଦି ମଧ୍ୟ ସେବାର ଉପଯୋଗୀ କରିବାକୁ ହେବ, ଅର୍ଥାତ୍ ମଳ ମୂତ୍ରାଦି ଉଚିତ ସମୟରେ ତ୍ୟାଗ କରିବା ଓ ସ୍ନାନାଦି କରିବା ଦ୍ୱାରା ଭକ୍ତର ଦେହ ଓ ମନ ସୁସ୍ଥ ରହେ ଓ ତାହାହେଲେ ଭକ୍ତି କାର୍ଯ୍ୟରେ ବାଧା ପଡ଼େ ନାହିଁ । କିନ୍ତୁ ସେଥିରେ ଯେପରି ମୁଁ ଧନୀ ହୁଏଁ, ମୋର ପୁଅ ହେଉ, ମୁଁ ଓ ମୋର ପରିବାରବର୍ଗ ନିରୋଗୀ ହେଉଁ, ଖ୍ୟାତି ବିସ୍ତାର ହେଉ ଇତ୍ୟାଦି ବାସନା ଆଦୌ ଯୋଗ ନ ଥାଏ ।

ସେ ଭକ୍ତି ପୁଣି ଛ ପ୍ରକାର ଫଳ ଉତ୍ପାଦନ କରେ । (୧) ପାପ ବିନାଶିନୀ, (୨) ମୋକ୍ଷଦାୟିନୀ (ଶୁଭଦାୟିନୀ ବୋଲି ଭକ୍ତି ରସାମୃତ ସିନ୍ଧୁରେ ଉଲ୍ଲେଖ), (୩) ମୋକ୍ଷ ଲଘୁତା କାରିଣୀ, (୪) ଅତ୍ୟନ୍ତ

ଦୁର୍ଲ୍ଲଭ, (୫) ଅମ୍ଭାର ସୁଖଦାୟୀ (ସାନ୍ଦ୍ରାନନ୍ଦ ସ୍ୱରୂପା), (୬) ଶ୍ରୀକୃଷ୍ଣାକର୍ଷିଣୀ ।

୧ । ପାପବିନାଶିନୀ—ଗୋବିନ୍ଦ ନାମ କୀର୍ତ୍ତନରୁ ପୂର୍ବ ଜନ୍ମର ପାପ, ଇହ ଜନ୍ମର ପାପ ଓ ପାପ ବୀଜ ସମସ୍ତ ନଷ୍ଟ ହୁଏ ।

୨ । ମୋକ୍ଷଦାୟିନୀ ବା ଶୁଭଦାୟିନୀ—ଅର୍ଥାତ୍ ଭକ୍ତିରୁ ସମସ୍ତ ସଦ୍‌ଗୁଣ ଲାଭ ହୁଏ ଏମନ୍ତ କି ମୁକ୍ତି ପର୍ଯ୍ୟନ୍ତ ଅକ୍ଲେଶରେ କରଗତ ହୁଏ ।

୩ । ମୋକ୍ଷଲଘୁତାକାରିଣୀ—ମୋକ୍ଷ ଭକ୍ତିଠାରେ ତୃଣବତ୍ ତୁଚ୍ଛ ପ୍ରତୀୟମାନ ହୁଏ ।

୪ । ଅତ୍ୟନ୍ତ ଦୁର୍ଲଭ—ଅର୍ଥାତ୍ କୃଷ୍ଣ ସହଜରେ ଲୋକକୁ ଭକ୍ତି ଦିଅନ୍ତି ନାହିଁ । ଶ୍ରୀମଦ୍‌ଭାଗବତ ପଞ୍ଚମ ସ୍କନ୍ଧ ଦେଖ ।

୫ । ଅମ୍ଭାର ସୁଖଦାୟୀ—ବ୍ରହ୍ମାନନ୍ଦକୁ ପରାର୍ଦ୍ଧ ସଂଖ୍ୟକ ବୃଦ୍ଧି କଲେ ମଧ୍ୟ ତାହା ଏହି ଭକ୍ତି ସୁଖ ସାଗରର ପରମାଣୁ ତୁଲ୍ୟ ନୁହେ ।

୬ । ଶ୍ରୀକୃଷ୍ଣାକର୍ଷିଣୀ—ଅର୍ଥାତ୍ ଭକ୍ତିରେ ଶ୍ରୀକୃଷ୍ଣ ଶୀଘ୍ର ଭକ୍ତର ବଶ ହୁଅନ୍ତି ।

---

## ୩ୟ ଅଧ୍ୟାୟ ।

### (ଭକ୍ତିବିଧି ବର୍ଣ୍ଣନ)

ଯଦି ଶ୍ରୀକୃଷ୍ଣଙ୍କର ଭକ୍ତି କରାଯାଏ ତେବେ ଯାଗ ତପସ୍ୟା ଆଦି ବେଦ ବିହିତ କାର୍ଯ୍ୟ ନ କଲେ ମଧ୍ୟ କୌଣସି ପ୍ରତ୍ୟବାୟ ନାହିଁ, କାରଣ କୃଷ୍ଣଭକ୍ତିରୁ ସମସ୍ତ ଲାଭ ହୁଏ ।

କିନ୍ତୁ ଭକ୍ତି ଆଚରଣ ନ କଲେ ସମସ୍ତ ପାପକର୍ମ୍ମ ନ କରି ମଧ୍ୟ ମନୁଷ୍ୟ ସମସ୍ତ ପାପର ଭାଗୀ ହୁଏ ।

ଶ୍ରୀମଦ୍‌ଭାଗବତରେ କଥିତ ହୋଇଅଛି ଯେ ବେଦବିହିତ ତପ, ଯାଗ, ତୀର୍ଥଭ୍ରମଣ, ଓ ଦାନ ଏ ସବୁକୁ ଅବଜ୍ଞା କରି ମଧ୍ୟ ଭଗବଦ୍‌ଭକ୍ତିର ଯାଜନ କଲେ ତାକୁ ଉତ୍ତମ ପୁରୁଷ ମଧ୍ୟରେ ଗଣ୍ୟ କରିବାକୁ ହେବ । ଭକ୍ତି ଆଚରଣ କଲେ ନର ଦେବ, ଋଷି ଓ ପିତୃ ଋଣରୁ ଆପେ ଆପେ ମୁକ୍ତ ହୁଏ । ଭୂତ ପ୍ରେତାଦିଙ୍କର ଭକ୍ତଠାରେ ଅଧିକାର ନାହିଁ ।

ଭକ୍ତି ଆଚରଣ କରି ପରିପକ୍ୱ ନ ହେଉଣୁ ଯଦି ମୃତ୍ୟୁ ଘଟେ ସେ ଭକ୍ତିବାସନାସହ ପୁନର୍ଜନ୍ମ ଗ୍ରହଣ କରି ଭକ୍ତିଯାଜନ କରନ୍ତି ଅତଏବ ଅପରିପକ୍ୱ ଅବସ୍ଥାରେ ମୃତ୍ୟୁ ହେତୁ ଭକ୍ତର କିଛି ହାନି ହୁଏ ନାହିଁ, କିମ୍ୱା ପୂର୍ବ ସାଧନ ବିଫଳ ହୁଏ ନାହିଁ ।

ଦୈବବଶରୁ ଆପଣା ସ୍ୱଇଚ୍ଛା ବିରୁଦ୍ଧରେ ଭକ୍ତ ଯଦି ଭକ୍ତିବିଗର୍ହିତ କୌଣସି କାର୍ଯ୍ୟ କରନ୍ତି ସେ ଦୋଷ ଭକ୍ତକୁ ସ୍ପର୍ଶ କରଇ ନାହିଁ । କୃଷ୍ଣ ସେଥିପାଇଁ ତାକୁ ପ୍ରାୟଶ୍ଚିତ୍ତ କରାନ୍ତି ନାହିଁ । କିନ୍ତୁ ଇଚ୍ଛା ସହିତ ଗର୍ହିତ କାର୍ଯ୍ୟ କଲେ ଅବଶ୍ୟ ତାହାର ଫଳ ଭୋଗ କରିବାକୁ ହୁଏ ।

କର୍ମାଚରଣ କରି ଦୈବବଶରୁ ସେ କର୍ମରେ ବିଘ୍ନ ଘଟିଲେ କର୍ମର ଦୋଷ ଜାତ ହୁଏ କିନ୍ତୁ ଭକ୍ତିରେ ସେପରି ଦୋଷ ଘଟେ ନାହିଁ ।

ଯଦି କୃଷ୍ଣଭକ୍ତି ଆଚରଣ କରି ଅଜ୍ଞାନତା ନିବନ୍ଧନ ଭକ୍ତ କିଛି ଫଳ କାମନା କରେ କୃଷ୍ଣ ଦୟା କରି ତାକୁ କାମନାର ଫଳ ନ ଦେଇ ଭକ୍ତିର ମୁଖ୍ୟ ଫଳ ଦିଅନ୍ତି । ଯେପରି କି ଶିଶୁ ସନ୍ତାନ ନ ବୁଝି ମନ୍ଦ ପଦାର୍ଥ ପ୍ରାର୍ଥନା କଲେ ମଧ୍ୟ ପିତାମାତା ପ୍ରବୋଧ ଦେଇ ଉତ୍ତମ ଦ୍ରବ୍ୟ ଦେଇ ଥାଆନ୍ତି ।

ଅତଏବ ଜାଣି ବା ନ ଜାଣି ଯେପରି ହେଉ ଭକ୍ତିଯାଜନ କଲେ ସଂସାରରୂପ ସାଗର ଗୋଷ୍ପଦରୂପ ପ୍ରତୀୟମାନ ହେବ ଓ ମନୁଷ୍ୟ ତାହା ଅକ୍ଳେଶରେ ପାର ହୋଇଯିବ ।

---

## ୪ର୍ଥ ଅଧ୍ୟାୟ ।

### (କର୍ମବନ୍ଧ କଥନ)

ତପ, ଦାନ ଆଦି ଦ୍ୱାରା ଲୋକ ଯଦି ସ୍ୱର୍ଗଭୋଗ କରେ ତଥାପି ତାହାର କର୍ମବୀଜ ନଷ୍ଟ ହୁଏ ନାହିଁ । ଭୋଗ ଶେଷରେ ପୁନର୍ବାର ତାକୁ ଭୂମଣ୍ଡଳରେ ଜନ୍ମ ଗ୍ରହଣ କରି କର୍ମଫଳ ଭୋଗ କରିବାକୁ ହୁଏ । କର୍ମ ଅନୁସାରେ କେହିବା କ୍ଷୁଦ୍ର ଜୀବରେ ଜନ୍ମ ହୁଏ କେହିବା ନରରୂପେ ଜନ୍ମ ହୁଏ । ଏମନ୍ତ କି ପ୍ରଳୟରେ ମଧ୍ୟ କର୍ମ ନଷ୍ଟ ହୁଏ ନାହିଁ ; ଜୀବ ତେତେବେଳେ ସୂକ୍ଷ୍ମ ବୀଜରୂପେ କର୍ମକୁ ଘେନି ରହିଥାଏ । ପ୍ରଳୟ ଅନ୍ତେ କର୍ମ ସେ ଜୀବକୁ ଜନ୍ମ କରାଏ । ଯଦି

କେହି ଶୁଭକର୍ମ କରଥାଏ ସେ ସେହି କର୍ମ ଫଳରୁ ସ୍ୱର୍ଗ ଭୋଗ କରେ କିନ୍ତୁ ତାହା କିପ୍ରକାର ନା ଗରଳମିଶା ସ୍ୱାଦୁ ଅନ୍ନ ଭୋଜନ ପରି। ଅର୍ଥାତ୍ କ୍ଷଣିକ ସୁଖଦାୟୀ ହେଲେ ମଧ୍ୟ ପରିଣାମରେ ପୀଡ଼ାକାରକ। ପଦ୍ମପୁରାଣରେ ଏହା ବର୍ଣ୍ଣିତ ହୋଇଅଛି। ଯଦି ସ୍ୱର୍ଗବାସରେ ସର୍ବ-ବନ୍ଧ ବିମୋଚନ ନ ହେଲା ତେବେ ଝୋଟରେ ବାନ୍ଧିଲେ ବନ୍ଧନ ଓ ପାଟରେ ବାନ୍ଧିଲେବି ବନ୍ଧନ, ସେଥିରେ ଆଉ ବିଶେଷ ଲାଭ କିଣ।

କିନ୍ତୁ ଯେ ଭକ୍ତିପଥ ଅବଲମ୍ବନ କରି ଶ୍ରୀକୃଷ୍ଣଙ୍କୁ ଭଜନ କରେ ଭଗବାନ ଶ୍ରୀକୃଷ୍ଣ ତାହାର କର୍ମ ବନ୍ଧନ ବିନାଶ କରି ନିଜ ପାର୍ଷଦ ଗଣରେ ଭୁକ୍ତ କରନ୍ତି। ଶ୍ରୀମଦ୍‌ଭଗବଦ୍‌ଗୀତାରେ "ସର୍ବ ଧର୍ମାନ୍ ପରିତ୍ୟଜ୍ୟ" ଇତ୍ୟାଦି ଭଗବାନ୍ ଶ୍ରୀମୁଖରେ ଆଜ୍ଞା କରିଅଛନ୍ତି।

---

୬ମ ଅଧ୍ୟାୟ।

(ଭକ୍ତିର ଅଧିକାରୀ କିଏ)

ବ୍ରାହ୍ମଣଙ୍କଠାରୁ ଶୂଦ୍ର ପର୍ଯ୍ୟନ୍ତ ସମସ୍ତ ଜାତିମାନଙ୍କର ଓ କି ପୁରୁଷ କିବା ନାରୀ ସମସ୍ତଙ୍କର ଭକ୍ତିରେ ଅଧିକାର ଅଛି। ଏମନ୍ତ କି ପଶୁ ପକ୍ଷୀ ପର୍ଯ୍ୟନ୍ତ ଭକ୍ତିର ଅଧିକାରୀ ହୋଇପାରନ୍ତି। ଗ୍ରନ୍ଥକାର ଗ୍ରନ୍ଥ ବିସ୍ତୃତି ଭୟରେ ଉଦାହରଣ ଉଲ୍ଲେଖ କରି ନାହାନ୍ତି କିନ୍ତୁ ଶ୍ରୀଚୈତନ୍ୟ ଚରିତାମୃତରେ ବର୍ଣ୍ଣିତ ଅଛି, ମହାପ୍ରଭୁ ବନପଥରେ ଶ୍ରୀବୃନ୍ଦାବନ ଗମନ କରୁଥିବା ସମୟରେ ବ୍ୟାଘ୍ର ହସ୍ତୀ ମୃଗ ପ୍ରଭୃତି ପଶୁମାନଙ୍କୁ ହରି ହରି ବୋଲାଇଥିଲେ ଓ ଶିବାନନ୍ଦଙ୍କ କୁକୁର ପୁରୁଷୋତ୍ତମ କ୍ଷେତ୍ରରେ ମହାପ୍ରଭୁଙ୍କ ପ୍ରଦତ୍ତ ପ୍ରସାଦ ସେବନ କରୁଥାଏ ଓ ହରି ହରି ନାମ ଉଚ୍ଚାରଣ କରୁଥାଏ।

ରସିକ ମଙ୍ଗଳରେ ଉଲ୍ଲେଖ ଅଛି ଶ୍ରୀରସିକାନନ୍ଦ ଦେବ ଗୋସ୍ୱାମୀ ବନଗଜକୁ ଭକ୍ତି ପ୍ରଦାନ କରି ଶାନ୍ତ କରାଇଥିଲେ।

ଭକ୍ତଗଣ ତିନି ଶ୍ରେଣୀରେ ବିଭକ୍ତ। ଉତ୍ତମ, ମଧ୍ୟମ ଓ କନିଷ୍ଠ। ଯେଉଁମାନେ ଭକ୍ତିଶାସ୍ତ୍ର ଉତ୍ତମରୂପେ ଜାଣନ୍ତି ଓ ବିଶେଷ ଶ୍ରଦ୍ଧାସହି ଭକ୍ତି କରନ୍ତି ସେମାନେ ଉତ୍ତମ, ଯେଉଁମାନେ ଶାସ୍ତ୍ରବିତ୍ ନୁହନ୍ତି କିନ୍ତୁ ଦୃଢ଼ ଶ୍ରଦ୍ଧାବାନ୍ ସେମାନେ ମଧ୍ୟମ ଓ ଯେଉଁମାନଙ୍କର ନବ ଶ୍ରଦ୍ଧା ଜାତ ହୋଇଥାଏ ସେମାନେ କନିଷ୍ଠ।

ଏହାଛଡ଼ା ଆଉ ଏକ ଶ୍ରେଣୀର ଭକ୍ତ ଅଛନ୍ତି ଯେଉଁମାନଙ୍କର ଭକ୍ତି କୃପାସିଦ୍ଧା । ସେମାନେ ଶାସ୍ତ୍ର ନ ପଢ଼ି ବା ସାଧନ ନ କରି ଶ୍ରୀକୃଷ୍ଣଙ୍କ କୃପାରୁ କିମ୍ବା ଉଚ୍ଚ ଭକ୍ତ କୃପାରୁ ଉତ୍ତମ ଭକ୍ତି ଲାଭ କରନ୍ତି । ଯେମନ୍ତ କି କୁମ୍ଭୀରଗ୍ରସ୍ତ ଗଜ ଲାଭ କରିଥିଲା । ଯେଉଁ ଲୋକର ଭକ୍ତିରେ ଶ୍ରଦ୍ଧା ନାହିଁ ସେ କୋଟିକୋଟି ଯାଗ କରୁ ବା ମେରୁ ସମାନ ଦ୍ରବ୍ୟ ଦାନ କରୁ ବା କୋଟି ତୀର୍ଥ ଭ୍ରମଣ କରୁ ଭକ୍ତିରେ ଅଧିକାରୀ ହୋଇ ନ ପାରେ ।

---

## ୬ଷ୍ଠ ଅଧ୍ୟାୟ ।

### (ଭକ୍ତିର ମହିମା)

ଭକ୍ତିରେ ଭଗବାନ୍ ଭକ୍ତର ବଶ ହୁଅନ୍ତି ଓ ଭକ୍ତକୁ ନିଜ ଗୋଲୋକଧାମରେ ପାର୍ଷଦ କରି ରଖନ୍ତି । ଭକ୍ତି ଆଗରେ ସାଲୋକ୍ୟାଦି ପଞ୍ଚବିଧ ମୁକ୍ତି ଅତି ତୁଚ୍ଛ । ଶ୍ରୀମଦ୍‌ଭାଗବତର ବହୁସ୍ଥାନରେ ଏହି ଭକ୍ତି ମହିମା ବର୍ଣ୍ଣିତ ହୋଇଅଛି । ଭକ୍ତଙ୍କ ଉପରେ ଯମରାଜାଙ୍କର ଅଧିକାର ନାହିଁ । ଯେଉଁମାନେ ଭକ୍ତଙ୍କ ସଙ୍ଗ କରନ୍ତି ସେମାନଙ୍କର ମଧ୍ୟ ସଦ୍‌ଗତି ହୁଏ ; ସାଧୁସଙ୍ଗ ଭକ୍ତିସାଧନର ଏକ ପ୍ରଧାନ ସହାୟ । ସାଧୁସଙ୍ଗରୁ ଭକ୍ତି ଉତ୍ପନ୍ନ ହୁଏ ଓ ସାଧୁସଙ୍ଗରୁ ଭକ୍ତି ବୃଦ୍ଧିକୁ ଲାଭ କରେ ।

ଏଠାରେ ଆମାହର ବକ୍ତବ୍ୟ ଏହିକି ଇଚ୍ଛା ଥିଲେ ଭଗବାନ୍ ସାଧୁସଙ୍ଗ ମିଳାଇ ଦିଅନ୍ତି ; ଯଦି ନିତାନ୍ତ ଦୁଷ୍ପ୍ରାପ୍ୟ ହୁଏ ତେବେ ସେପରିସ୍ଥଳେ ଲୋକର ସାଧୁଶାସ୍ତ୍ର ଅର୍ଥାତ୍ ଭକ୍ତିଗ୍ରନ୍ଥ ପାଠ କରିବା ବିଧେୟ ; କାରଣ ତାହା ଏକପ୍ରକାର ଉଚ୍ଚଦରର ସାଧୁସଙ୍ଗ ; ଶାସ୍ତ୍ର ପାଠକରି ତାହାର ମର୍ମ ଚିନ୍ତାଦ୍ୱାରା ମନ ଅସତ୍‌ଭାବରୁ ନିବୃତ୍ତ ରହେ ଓ ଶାସ୍ତ୍ରମର୍ମ ହୃଦୟରେ ପ୍ରବେଶ କରି ଶ୍ରୋତାକୁ କ୍ରମେ କ୍ରମେ ଉଚ୍ଚଆଡ଼କୁ ଘେନିଯାଏ ।

---

## ୭ମ ଅଧ୍ୟାୟ ।

### (ଗୁରୁ ଶିଷ୍ୟ ଲକ୍ଷଣ)

ସମସ୍ତେ ଗୁରୁ ହେବାର ଯୋଗ୍ୟ ନୁହନ୍ତି । ଗୃହ ବର୍ଣ୍ଣର ଗୁରୁ ଯେ ବ୍ରାହ୍ମଣ ସେମାନେହିଁ ଗୁରୁ ଯୋଗ୍ୟ । କିନ୍ତୁ କେବଳ ବ୍ରାହ୍ମଣ ହେଲେ ଯେ ଗୁରୁ ହୋଇ ପାରିବେ ଏମନ୍ତ ନୁହେ । ଗୁରୁ ହେବାର ଉପଯୋଗୀ ଗୁଣମାନ ଥିବା ଅବଶ୍ୟକ, ଅର୍ଥାତ୍ ଯେ ଦୟା, ଶାନ୍ତି, କ୍ଷମା ଆଦି ସଦ୍‌ଗୁଣାବଳିରେ ଭୂଷିତ ଥିବେ ଓ ଯାହାଙ୍କଠାରେ ଦୃଢ଼ ଭକ୍ତି ଥିବ ସେହିପରି ବ୍ରାହ୍ମଣହିଁ ଗୁରୁ ଯୋଗ୍ୟ । ଯଦି କୃଷ୍ଣଭକ୍ତି ନ ଥାଏ ତେବେ ସର୍ବଗୁଣସମ୍ପନ୍ନ ବ୍ରାହ୍ମଣ ମଧ୍ୟ ଗୁରୁ ହେବାର ଅଯୋଗ୍ୟ ।

ଗ୍ରନ୍ଥକର୍ତ୍ତା ଏଠାରେ ବ୍ରାହ୍ମଣେତର ଜାତି ଗୁରୁ ହୋଇ ପାରନ୍ତି କି ନା ସ୍ପଷ୍ଟ ପ୍ରକାଶ କରି ନାହାନ୍ତି, କିନ୍ତୁ ତାଙ୍କ ଲେଖାରୁ ଏହା ପ୍ରତିପନ୍ନ କରାଯାଇ ପାରେ ଯେ ବ୍ରାହ୍ମଣେତର ଜାତି ମଧ୍ୟ ଉଚ୍ଚଶ୍ରେଣୀର କୃଷ୍ଣଭକ୍ତ ହେଲେ ଗୁରୁ ଯୋଗ୍ୟ ଅଟନ୍ତି । ଏହା ମଧ୍ୟ ଶାସ୍ତ୍ରସମ୍ମତ । ଶ୍ରୀନରୋତ୍ତମ ଠାକୁର ଓ ଶ୍ରୀଶ୍ୟାମାନନ୍ଦ ପ୍ରଭୁ ଓ ଶ୍ରୀରସିକାନନ୍ଦ ଦେବ ଗୋସ୍ୱାମୀ ଏମାନେ ବ୍ରାହ୍ମଣ ନ ଥିଲେ କିନ୍ତୁ ଶତ ଶତ ଉଚ୍ଚକୁଳୋଦ୍ଭବ ବ୍ରାହ୍ମଣ ସେମାନଙ୍କର ଶିଷ୍ୟ ହୋଇ ଅପଣାକୁ କୃତାର୍ଥ ମଣିଥିଲେ । (ଭକ୍ତିରତ୍ନାକରାଦି ଦ୍ରଷ୍ଟବ୍ୟ) ଅତଏବ ଗୁରୁଙ୍କଠାରେ ଉଚ୍ଚଦରର ବୈଷ୍ଣବତା ଥିବା ବାଞ୍ଛନୀୟ ।

ଯେ ସେ ଲୋକକୁ ମନ୍ତ୍ର ଦେଇ ଶିଷ୍ୟ କରିବା ମଧ୍ୟ ବିଧେୟ ନୁହେ ; ମନ୍ତ୍ର ଦେବା ପୂର୍ବରୁ ଗୁରୁଙ୍କର ଉଚିତ ଯେ ସେ ଶିଷ୍ୟକୁ ପରୀକ୍ଷା କରିବେ ; ଦେଖିବେ ସେ ବ୍ୟକ୍ତି ମନ୍ତ୍ର ନେଇ ଧାରଣା କରି ପାରିବ କି ନା ଓ ଭକ୍ତି ଉତ୍ତମରୂପେ ଆଚରଣ କରି ପାରିବ କି ନା । ଯେ ଲୋକ ବିନୀତ, ସତ୍ୟଭାଷୀ, ଦମ୍ଭଶୂନ୍ୟ, ସେବାନୁରାଗୀ ସେ ଶିଷ୍ୟର ଉପଯୋଗୀ ।

ଗୁରୁଙ୍କୁ ଭଗବାନଙ୍କ ସ୍ୱରୂପ ଜାଣି ତାଙ୍କର ପୂଜା କରିବା ବିଧେୟ । ଗୁରୁଙ୍କୁ ଅବଜ୍ଞା କରିବା ଉଚିତ ନୁହେ । ଗୁରୁଦ୍ରୋହୀ ଲୋକର ସଦ୍‌ଗତି କଦାପି ସମ୍ଭବପର ନୁହେ । ଗୁରୁ ନ କରି ଇଚ୍ଛାମତ ଭକ୍ତି ଆଚରଣ କଲେ କେହି ଶ୍ରୀକୃଷ୍ଣଚରଣାରବିନ୍ଦ ଲାଭ କରି ନ

ପାଡ଼ରେ । ଗୁରୁ ପଦାଶ୍ରୟ ଏକାନ୍ତ ଆବଶ୍ୟକ । ବିନାଗୁରୁରେ ସମସ୍ତ ସାଧନ ବୃଥା, ଏହା ଶାସ୍ତ୍ରସିଦ୍ଧ ।

---

## ୮ମ ଅଧ୍ୟାୟ ।

### (ସାଧନ ଭକ୍ତି)

ଭକ୍ତି ତିନି ପ୍ରକାର—ସାଧନ ଭକ୍ତି, ଭାବ ଭକ୍ତି ଓ ପ୍ରେମଭକ୍ତି ।

ସାଧନ ଭକ୍ତି—ଭାବ ଓ ପ୍ରେମ ନିତ୍ୟ ସିଦ୍ଧ ବସ୍ତୁ । ତାହା ଜୀବ ହୃଦୟରେ ଲୁକ୍କାୟିତଭାବରେ ଥାଏ । ତାକୁ ଉଦ୍ଦୀପନ କରିବାର ନାମ ସାଧନ ।

ସାଧନ ଭକ୍ତି ପୁଣି ଦୁଇପ୍ରକାର, ବୈଧୀ ଓ ରାଗାନୁଗା ।

ଭକ୍ତିରେ ଅନୁରାଗ ନ ଥାଇ କେବଳ ଶାସ୍ତ୍ରର ଶାସନ ଭୟରେ ଯେ ଭକ୍ତି ବିଷୟରେ ପ୍ରବୃତ୍ତି ଜନ୍ମେ ତାକୁ ସାଧନ ଭକ୍ତି ବୋଲାଯାଏ । ସାଧନ ଭକ୍ତିର ୬୪ ଅଙ୍ଗ ଅଛି । ପ୍ରଥମେ ଜୀବ ପକ୍ଷେ ବୈଧୀ ଭକ୍ତି ଆଚରଣ ଶ୍ରେୟସ୍କର । ସେଥିରୁ ରାଗ ଉତ୍ପତ୍ତି ହୁଏ ।

---

## ୯ମ ଅଧ୍ୟାୟ ।

### (ଚତୁଃଷଷ୍ଟି ଅଙ୍ଗ ସାଧନ)

(୧) ଗୁରୁପଦାଶ୍ରୟ, (୨) ବୈଷ୍ଣବ ମନ୍ତ୍ର ଗୁରୁଙ୍କଠାରୁ ଦୀକ୍ଷାଗ୍ରହଣ କରି ତଦ୍‌ବିଷୟ ତାଙ୍କଠାରୁ ଶିକ୍ଷା, (୩) ବିଶ୍ୱାସ ସହ ତାଙ୍କ ସେବା, (୪) ସାଧୁମାର୍ଗ ଅନୁସରଣ, (୫) ଧର୍ମ ଜିଜ୍ଞାସା, (୬) କୃଷ୍ଣ ସେବା ହେତୁ ଭୋଗଲିପ୍‌ସା ତ୍ୟାଗ, (୭) ଦ୍ୱାରକାରେ ବା ଗଙ୍ଗାଦି ନିକଟରେ ବାସ, (୮) ଭକ୍ତିର ଆବଶ୍ୟକତା ଅନୁସାରେ କାର୍ଯ୍ୟର ଅନୁଷ୍ଠାନ ଅର୍ଥାତ୍ ବୃଥା ବାହ୍ୟାଡ଼ମ୍ବର ଶୂନ୍ୟ, (୯) ଏକାଦଶୀ ବ୍ରତର ସମ୍ମାନ, (୧୦) ଅଁଳା ଅଶ୍ୱତ୍ଥ ଆଦି ବୃକ୍ଷର ସମ୍ମାନ, (ବ୍ୟତିରେକରେ ୧୦ମ ଯଥା), (୧୧) ଅସାଧୁ ସଙ୍ଗ ବର୍ଜନ, (୧୨) ଅନଧିକାରୀ ବ୍ୟକ୍ତିକୁ ଶିଷ୍ୟ କରି ବିଶେଷ ଶିଷ୍ୟବର୍ଗ ବଢ଼ାଇବା ଏହା ବର୍ଜନ, (୧୩) ବୃହତ୍ ମଠାଦି ନିର୍ମାଣ ବିଷୟରେ ନିରୁଦ୍ୟମତା, ( ଏହା ଭକ୍ତି ଗ୍ରନ୍ଥରେ ଉଲ୍ଲେଖ ନାହିଁ ) (୧୪) ବହୁ ଶାସ୍ତ୍ରାଭ୍ୟାସ ପରିବର୍ଜନ ( ଏହା ଦ୍ୱାରା ଭକ୍ତି ଗ୍ରନ୍ଥ ପଠନ ବର୍ଜନ ନୁହେ, ଅପର ଶାସ୍ତ୍ର ) ଓ ଶାସ୍ତ୍ର ବ୍ୟାଖ୍ୟା କରି ପାଣ୍ଡିତ୍ୟପ୍ରଦର୍ଶନ

ଶ୍ରା ତର୍କାଦି ବର୍ଜନ,(୧୫) ବ୍ୟବହାର କୃପଣତା ବର୍ଜନ, (୧୬) ଶୋକ ମୋହାଦିରେ ବଶୀଭୂତ ନ ହେବା, (୧୭) ଅନ୍ୟ ଦେବ ଦେବୀଙ୍କୁ ନିନ୍ଦା ପରିବର୍ଜନ, (୧୮) ଜୀବହିଂସା ବର୍ଜନ, ପ୍ରାଣି ମାନଙ୍କୁ ଉଦ୍‌ବେଗ ନ ଦେବା, (୧୯) ସେବାପରାଧ ଓ ନାମାପରାଧ ବର୍ଜନ, (୨୦) କୃଷ୍ଣ କିମ୍ବା ଭକ୍ତ ନିନ୍ଦାରେ ଅସହିଷ୍ଣୁତା, (୨୧) ବୈଷ୍ଣବ ଚିହ୍ନ ଧାରଣ (ତିଳକ ଶିଖାଦି), (୨୨) ଦେହରେ ହରି ନାମାକ୍ଷର ଛାପା ଗ୍ରହଣ, (୨୩) ନିର୍ମାଲ୍ୟ ଧାରଣ ପ୍ରସାଦ ମାଳ ଚନ୍ଦନ ଓ ବସ୍ତ୍ର, (୨୪) ଶ୍ରୀମୂର୍ତ୍ତିଙ୍କ ଅଗ୍ରେ ନର୍ତ୍ତନ, (୨୫) ଦଣ୍ଡବତ ପ୍ରଣାମ, (୨୬) ଶ୍ରୀକୃଷ୍ଣ ବିଗ୍ରହାଦି ଦେଖି ଅଭ୍ୟୁଥାନ, (୨୭) ଅନୁଗମନ, (୨୮) ବିଗ୍ରହ ଅଧିଷ୍ଠାନ ସ୍ଥାନକୁ ଗମନ, (୨୯) ପରିକ୍ରମା, (୩୦) ଅର୍ଚ୍ଚନ, (୩୧) ପରିଚର୍ଯ୍ୟା, (୩୨) ଗୀତ, (୩୩) ସଂକୀର୍ତ୍ତନ, (୩୪) ନାମଜପ, (୩୫) ବିଜ୍ଞପ୍ତି, (୩୬) ସ୍ତବପାଠ, (୩୭) ନୈବେଦ୍ୟ ଆସ୍ୱାଦ ଗ୍ରହଣ, (୩୮) ପାଦ୍ୟାସ୍ୱାଦ ଗ୍ରହଣ, (୩୯) ଧୂପମାଲାଦିର ସୌରଭ ଗ୍ରହଣ, (୪୦) ଶ୍ରୀମୂର୍ତ୍ତି ସ୍ପର୍ଶନ, (୪୧) ଶ୍ରୀମୂର୍ତ୍ତି ଦର୍ଶନ, (୪୨) ଆରତିକରେ ସ୍ୱବାଞ୍ଛ ଦର୍ଶନ, (୪୩) ଗୀତ ଶ୍ରବଣ, (୪୪) କୃଷ୍ଣଙ୍କୁ ପ୍ରାର୍ଥନା, (୪୫) ସ୍ମରଣ, (୪୬) ଧ୍ୟାନ, (୪୭) ସେବା (ଦାସ୍ୟ), (୪୮) ସଖ୍ୟ ଭାବ, (୪୯) ଆତ୍ମନିବେଦନ, (୫୦) ନିଜ ପ୍ରିୟ ବସ୍ତୁ କୃଷ୍ଣଙ୍କୁ ଉପହାର ଦେବା, (୫୧) ଶ୍ରୀକୃଷ୍ଣ ପ୍ରୀତି ଉଦ୍ଦେଶ୍ୟରେ ସମସ୍ତ ଚେଷ୍ଟା, (୫୨) ସକଳ ଅବସ୍ଥାରେ ଶରଣାପନ୍ନ, (୫୩) ତଦୀୟ ( କୃଷ୍ଣ ସମ୍ବନ୍ଧୀୟ ) ବସ୍ତୁର ସେବନ (ଅର୍ଥାତ୍ ତୁଳସୀ ଆଦି), (୫୪) ଶାସ୍ତ୍ରପାଠ, (୫୫) ମଥୁରା ସେବା, (୫୬) ବୈଷ୍ଣବ ସେବା, (୫୭) ବୈଭବାନୁଯାୟି ନିଜ ଗୋଷ୍ଠୀସହ କୃଷ୍ଣ ଯାତ୍ରାଦି ଉତ୍ସବକୁ ଯାପନ, (୫୮) କାର୍ତ୍ତିକ ମାସର ସମାଦର, (୫୯) ଶ୍ରୀକୃଷ୍ଣଙ୍କ ଜନ୍ମ ଯାତ୍ରା, (୬୦) ଶ୍ରୀବିଗ୍ରହଙ୍କ ଚରଣ ସେବନ, (୬୧) ରସିକ ଭକ୍ତମାନଙ୍କ ସଙ୍ଗେ ଭାଗବତାସ୍ୱାଦନ, (୬୨) ସଜାତୀୟ ସ୍ନିଗ୍ଧ ସ୍ୱଭାବ ବଶିଷ୍ଟ ସାଧୁଙ୍କ ସଙ୍ଗ, (୬୩) ନାମ ସଂକୀର୍ତ୍ତନ, (୬୪) ମଥୁରାମଣ୍ଡଳେ ବାସ ।

ଭକ୍ତିରସାମୃତସିନ୍ଧୁ ଅନୁସାରେ ଏ ୬୪ ଅଙ୍ଗ ଲିଖିତ ହେଲା ।

---

## ୧୦ମ ଅଧ୍ୟାୟ ।

୬୪ ମଧ୍ୟରୁ ପ୍ରଥମ ୧୦ ଅଙ୍ଗର ବିଶଦ୍‌ବ୍ୟାଖ୍ୟା ଏ ଅଧ୍ୟାୟରେ ବର୍ଣ୍ଣିତ ହୋଇଅଛି ।

---

## ୧୧ଶ ଅଧ୍ୟାୟ ।

ଏଥିରେ ୬୪ ଅଙ୍ଗ ମଧ୍ୟରୁ ନବମ ଅଧ୍ୟାୟରେ ବର୍ଣ୍ଣିତ ହୋଇଥିବା ୧୧ଠାରୁ କୋଡ଼ିଏ ପର୍ଯ୍ୟନ୍ତ ୧୦ ବ୍ୟତିରେକ ଅଙ୍ଗମାନ ବର୍ଣ୍ଣିତ ହୋଇଅଛି ।

---

## ୧୨ଶ ଅଧ୍ୟାୟ

ଏ ଅଧ୍ୟାୟରେ ଶ୍ରବଣ କୀର୍ତ୍ତନାଦି ନବପ୍ରକାର ଭକ୍ତିର ମହିମା ବର୍ଣ୍ଣିତ ହୋଇଅଛି । ସେଥିମଧ୍ୟରୁ ସ୍ମରଣ ବିଧିର କାଳାକାଳ ନାହିଁ, ଲୋକ ଗମନାଗମନ ସମୟରେ ମଧ୍ୟ ଶ୍ରୀକୃଷ୍ଣ ନାମ ଗୁଣ ଲୀଳାଦି ସ୍ମରଣ କରି ପାରନ୍ତି, ଅତଏବ ଏହା ଅତି ସୁଗମ ପଥ ଅଟେ । ଆତ୍ମନିବେଦନ ବିଷୟରେ କବି ଲେଖୁଅଛନ୍ତି କି ଦେହ, ଧନ, ଦାର, ସୁତ ସମସ୍ତ କୃଷ୍ଣଙ୍କଠାରେ ସମର୍ପଣ କଲାଠାରୁ କାହିଁରେ ଆଉ ଉଦ୍‌ବେଗ ରହିବ ନାହିଁ । ଯଦି ଜଣେ ପଶ୍ୱାଧିକାଂକ୍ଷୀ ପଶୁକୁ ଅପରକୁ ବିକ୍ରୟ କରନ୍ତି, ପଶୁର ଭରଣପୋଷଣ ଭାର ତାଙ୍କ ନିଜଠାରେ ନ ଥାଏ, ସେହିପରି ଆପଣାକୁ ଏକାନ୍ତଭାବରେ ଶ୍ରୀକୃଷ୍ଣଙ୍କ ପଦରେ ବିକ୍ରୟ କଲେ ନିଜ ପାଇଁ ଆଉ ଚିନ୍ତା କିଣ ?

---

## ୧୩ଶ ଅଧ୍ୟାୟ ।

ଶ୍ରୀମୂର୍ତ୍ତିଦର୍ଶନ ଆଦି ଦ୍ୱାଦଶ ଅଙ୍ଗ ଏ ଅଧ୍ୟାୟରେ ବର୍ଣ୍ଣିତ ହୋଇଅଛି ।

---

## ୧୪ଶ ଅଧ୍ୟାୟ ।

ଏ ଅଧ୍ୟାୟରେ ଜପାଦି ଦଶ ଅଙ୍ଗର ବର୍ଣ୍ଣନ ହୋଇଅଛି । ସେଥିମଧ୍ୟରେ ଧ୍ୟାନ ତିନିପ୍ରକାର,—ରୂପଧ୍ୟାନ, ଗୁଣଧ୍ୟାନ ଓ ଲୀଳାଧ୍ୟାନ ।

ବିଜ୍ଞପ୍ତି ପୁଣି ୩ପ୍ରକାର ଯଥା;—

ପ୍ରାର୍ଥନାମୟିକା—ଭଗବନ୍ ! ଯୁବତୀମାନଙ୍କର ଯୁବାପୁରୁଷଠାରେ ହୃଦୟ ଯେପରି ପ୍ରେମାର୍ଦ୍ର ହୁଏ, ମୋର ହୃଦୟ ତୁମ୍ଭଠାରେ ସେହିପରି ଅନୁରକ୍ତ ହେଉ ।

ଲାଳସାମୟୀ—ହେ ପ୍ରଭୋ ! କେବେ ମୁଁ ଗୋପରେ ଯମୁନାକୂଳରେ ଅଶ୍ରୁପୁଲକାଙ୍ଗ ହୋଇ ତୋର ନାମ ଗାୟନ କରି ନୃତ୍ୟ କରିବି ?

ଦୈନ୍ୟବୋଧିକା—ମୋ ସମ ପାପୀ ଆଉ ଜଗତରେ ନାହିଁ । ଏମନ୍ତ କି ମୋର ପାପ ଏତେ ଯେ ମୋତେ କ୍ଷମା କର ଏହା କହିବାକୁ ମଧ୍ୟ ଲଜ୍ଜା ବୋଧ ହୁଏ ।

ନିଜ ପ୍ରିୟ ଦ୍ରବ୍ୟମାନ କୃଷ୍ଣଙ୍କୁ ଅର୍ପଣ କରିବ । ଅର୍ପଣ ଏପରି ହେବା ଉଚିତ ଯେ ସେଥିରେ ଯେପରି ନିଜ ଭୋଗ ଇଚ୍ଛା ନ ଥାଏ । ଅସମୟରେ ଗୋଟିଏ ଆମ୍ବ ଜଣେ ଆଣିଦେଲା । ଭକ୍ତ ତାକୁ କୃଷ୍ଣଙ୍କ ଭୋଗ ପାଇଁ ଅର୍ପଣ କରି ଯଦି ମନେ କରେ ଭୋଗ ହେବା ପରେ ମୁଁ ମୋର ଜିହ୍ୱା ଓ ଉଦର ତୃପ୍ତି କରିବି ତେବେ ତାହା ପ୍ରକୃତ କୃଷ୍ଣାର୍ପଣ ନୁହେ । ଯଦି ସେ ଭୋଗ ପରେ ଫେରି ଆସିବ ଏ ଆଶା ନ ରଖେ ବା ବୈଷ୍ଣବ ସେବାରେ ସେ ଭୋଗ ଖର୍ଚ୍ଚ ହେଉ ମୋର ଟିକିଏ ମାତ୍ର ପ୍ରସାଦ ହେଲେ ହେଲା ନ ହେଲେ ନାହିଁ, ଏହାହିଁ ପ୍ରକୃତ କୃଷ୍ଣାର୍ପଣ ।

ହରିଙ୍କ ନିମିତ୍ତ ସକଳ ଚେଷ୍ଟା—ଅର୍ଥାତ୍ ଲୌକିକ ବା ବୈଦିକ ଯେତେ କାର୍ଯ୍ୟ ସବୁ ହରିଭକ୍ତିର ଅନୁକୂଳ ହେବା ବାଞ୍ଛନୀୟ ।

ଶରଣାପତ୍ତି—ଏକାନ୍ତଭାବେ ଶରଣ ନେବା । ଯଦି ବିପଦ ପଡ଼େ ତାହା ମଧ୍ୟ ଭାବିବାକୁ ହେବ ଯେ ମଙ୍ଗଳମୟ ହରି ଏହା ମଙ୍ଗଳ ପାଇଁ ଘଟାଇ ଅଛନ୍ତି । ଗୋଟିଏ ଗଳ୍ପ ମନେ ପଡ଼ିବାରୁ ଲେଖୁଅଛି । ଧନେ ମଙ୍ଗଳପୁରର ଭୂୟାଁ ଭକ୍ତପ୍ରବର ଶ୍ରୀବଳଭଦ୍ରପ୍ରସାଦ ଦାସ କହୁଥିଲେ—ଜଣେ ପ୍ରଜା ଆସି କୌଣସି ରାଜାଙ୍କୁ କହିଲା ମହାରାଜ ! ଆପଣ ତ ମୋର ବାପ ମା, ଆପଣ ଯାହା କରିବେ ମାରିଲେ ମାରିବେ, ରଖିଲେ ରଖିବେ । ରାଜା ତାହାର ଉକ୍ତିର ସତ୍ୟ ବୁଝିବା ପାଇଁ ଜଣେ ଭୃତ୍ୟକୁ ସେ ପ୍ରଜା ଉପରେ ୧୦ ପାହାର ବେତାଘାତ କରିବାକୁ ଆଦେଶ ଦେଲେ । ଉକ୍ତ ପ୍ରଜା ପ୍ରହାରିତ ହୁଅନ୍ତେ

ତତ୍କ୍ଷଣାତ୍ ଯାଇ ରଜାଙ୍କ ବନ୍ଧୁ [illegible] ମାନଙ୍କ ଦରବାରରେ ନାଲିସ କଲା । ଅ[illegible] ପ୍ରଜାମାନେ ରାଜାଙ୍କୁ "ତୁମ୍ଭେ ବାପ ମା, ମାରିଲେ ମାରିବ, ରଖିଲେ ରଖିବ" କହୁଥିଲା ଏହା ମୌଖିକ ଭକ୍ତି ମାତ୍ର; କିନ୍ତୁ ସେ ଭକ୍ତିର ପ୍ରକୃତ ତାତ୍ପର୍ଯ୍ୟ ତାର ହୃଦୟକୁ ସ୍ପର୍ଶ କରି ନ ଥିଲା । ଆମ୍ଭମାନଙ୍କର ଭଗବାନଙ୍କଠାରେ ଶରଣାପତ୍ତି ମଧ୍ୟ ସେହିପରି । ପ୍ରକୃତ ଶରଣାପତ୍ତି ହେଲେ ଭଗବାନ୍ ନିଶ୍ଚୟ ସମସ୍ତ ବିପଦରୁ ରକ୍ଷା କରିବେ ।

---

## ୧୫ଶ ଅଧ୍ୟାୟ ।

ଉର୍ଜାଦି ଦଶ ଅଙ୍ଗର ବର୍ଣ୍ଣନ—ଅର୍ଥାତ୍ କାର୍ତ୍ତିକ ମାସ ବ୍ରତାଦି । କାର୍ତ୍ତିକ ବ୍ରତାଦି ଆଚରଣ କରିବ । ସଜାତୀୟ ବୈଷ୍ଣବ ସଙ୍ଗେ କୃଷ୍ଣ କଥାରେ ଯେଉଁ କ୍ଷଣ ବା ଦଣ୍ଡ ଅତିବାହିତ ହୁଏ ତାହା ଅତି ମୂଲ୍ୟବାନ୍ । ସାଧାରଣଙ୍କ ସମ୍ମୁଖରେ ଭକ୍ତିର ବାହ୍ୟ ବିଷୟ ନେଇ ଆଲୋଚନା ହୋଇପାରେ, କିନ୍ତୁ ଅନ୍ତରଙ୍ଗ ଭକ୍ତ ନ ହେଲେ ଅନ୍ତର ବିଷୟ ବୋଲିଯାଇ ନ ପାରେ । କେହି ଏଥିରେ ଏହି ଆପତ୍ତି କରି ପାରନ୍ତି, ଯେ ଭଗବଦ୍‌ଭକ୍ତି ସର୍ବସମାଦୃତ ଉଚ୍ଚ ବିଷୟ, ସେଥିରେ ଆଉ ଗୋପନୀୟ ବା ଅପ୍ରକାଶ୍ୟ କଣ ଅଛି ଯେ ଅନ୍ତରଙ୍ଗ ଭକ୍ତ ନ ହେଲେ ସର୍ବତ୍ର ପ୍ରକାଶ କରି ହେବ ନାହିଁ । କିନ୍ତୁ ଯେପରି ଜଣେ ମୂର୍ଖଠାରେ ଯଦି କେହି ବେଦତତ୍ତ୍ୱର ଅନୁଶୀଳନ କିମ୍ବା ବୀଜଗଣିତର ବିଷୟ ବ୍ୟାଖ୍ୟା କରେ ସେ ମୂର୍ଖ ସେ ବ୍ୟାଖ୍ୟା ଶୁଣିବାକୁ ଆଗ୍ରହ କରିବ କି ? ସେ କହିବ ଏ କଣ ବକୁଅଛି, ଏହା ମନେ କରି ବିରକ୍ତ ହୋଇ ଉଠିଯିବ । ସେହିପରି ଯେଉଁମାନେ କୃଷ୍ଣ-ଭକ୍ତିର ଉଚ୍ଚ ମର୍ମ୍ମ ଗ୍ରହଣ କରି ନାହାନ୍ତି ତାହାଙ୍କଠାରେ ଭକ୍ତିର ସାର ବିଷୟରେ ଆଲୋଚନା କଲେ ସେମାନଙ୍କୁ ତାହା ଅପ୍ରୀତିକର ହେବ ଓ ଭକ୍ତି ପ୍ରତି ତଦ୍ୱାରା ଅମର୍ଯ୍ୟାଦା କରା ହେବ ଏବଂ ରସଭଙ୍ଗ ହେବ । ଏହିହେତୁ ମହାପ୍ରଭୁ ପ୍ରାଣିନିର୍ବିଶେଷରେ ନାମ ଉପଦେଶ ଦେଉଥିଲେହେଁ କେବଳ ସ୍ୱରୂପ ଗୋସାଇଁ ଓ ରାୟ ରାମାନନ୍ଦ ପ୍ରଭୃତି କେତେ ଉଚ୍ଚ ଭକ୍ତଙ୍କ ସହ ରସପ୍ରସଙ୍ଗର ଆଲୋଚନା କରୁଥିଲେ ।

ନାମ ଓ ସ୍ୱରୂପ ଭିନ୍ନ ନୁହେଁ । ଅତଏବ କୃଷ୍ଣନାମ ଗ୍ରହଣକଲେ ସର୍ବାର୍ଥଲାଭ ହୁଅଇ ।

୬୪ ଅଙ୍ଗ ମଧ୍ୟରୁ ନିମ୍ନଲିଖିତ ପାଞ୍ଚ ଅଙ୍ଗ ସର୍ବଶ୍ରେଷ୍ଠ । ଶ୍ରୀମୂର୍ତ୍ତିପଦସେବନ, ଶ୍ରୀଭାଗବତ ଆସ୍ୱାଦନ, ସଜାତୀୟ ସାଧୁଙ୍କ ସଙ୍ଗ, ହରିନାମକୀର୍ତ୍ତନ ଓ ମଥୁରାମଣ୍ଡଳରେ ବାସ ।

---

## ୧୬ଶ ଅଧ୍ୟାୟ ।

୬୪ ଅଙ୍ଗ ଭକ୍ତିସାଧନର ମୁଖ୍ୟଫଳ କୃଷ୍ଣପ୍ରେମପ୍ରାପ୍ତି ଓ ଗୌଣଫଳ ଧର୍ମଅର୍ଥାଦି ପ୍ରାପ୍ତି । ବିଷୟାସକ୍ତ ବ୍ୟକ୍ତିମାନଙ୍କର ଚିତ୍ତବୃତ୍ତିକୁ ଭକ୍ତି ମାର୍ଗରେ ପ୍ରବେଶ କରାଇବାପାଇଁ ଏଥିରେ ଗୌଣଫଳର ଉଲ୍ଲେଖ ହୋଇଅଛି ।

ଜ୍ଞାନ ଓ ବୈରାଗ୍ୟ ଚିତ୍ତକୁ କଠିନ କରଏ କିନ୍ତୁ କୃଷ୍ଣଭକ୍ତି ଅତି କୋମଳ । ଏକ ଭକ୍ତି ସାଧନ କଲେ ଜ୍ଞାନ ଓ ବୈରାଗ୍ୟାଦି ସକଳ ସେଥିରୁ ଆପେ ଆପେ ଜାତ ହୁଏ ।

---

## ୧୭ଶ ଅଧ୍ୟାୟ ।

ବ୍ରଜବାସିଜନଙ୍କର କୃଷ୍ଣଙ୍କଠାରେ ଯେଉଁ ଭକ୍ତି ତାର ନାମ ରାଗାତ୍ମିକା ଭକ୍ତି ; ସେ ରାଗାତ୍ମିକା ଭକ୍ତିର ଅନୁଗତା ଯେ ଭକ୍ତି ତାକୁ ରାଗାନୁଗା ଭକ୍ତି ବୋଲିଯାଏ । ରାଗାନୁଗା ଭକ୍ତି ବୁଝିବାପାଇଁ ରାଗାତ୍ମିକା ଭକ୍ତି କଣ ବୁଝିବା ଆବଶ୍ୟକ । ରାଗାତ୍ମିକା ଭକ୍ତି ଦୁଇପ୍ରକାର—କାମରୂପା ଓ ସମ୍ବନ୍ଧରୂପା । କାମରୂପା ଭକ୍ତି—ଯେଉଁ ଭକ୍ତି ସମ୍ଭୋଗତୃଷ୍ଣାକୁ ପ୍ରେମମୟ ରୂପରେ ପରିଣତ କରେ ତାର ନାମ କାମରୂପା ଭକ୍ତି । କୃଷ୍ଣ ସୁଖହିଁ ଏହି ଭକ୍ତିର ତାତ୍ପର୍ଯ୍ୟ ; ବ୍ରଜଗୋପୀମାନଙ୍କଠାରେ ଏହା ବର୍ତ୍ତମାନ । କାମକ୍ରୀଡ଼ାର ସାମ୍ୟ ଥିବାରୁ ଏହି ଗୋପୀପ୍ରେମ କାମ ନାମରେ ବର୍ଣ୍ଣିତ ହୋଇଅଛି । ଗୋପୀମାନେ ମନପ୍ରାଣ ସମସ୍ତ କୃଷ୍ଣଙ୍କଠାରେ ଅର୍ପଣ କରି ଅଛନ୍ତି, ତାଙ୍କ ଭିନ୍ନ ସେ ଆଉ କିଛି ମାତ୍ର ଜାଣନ୍ତି ନାହିଁ । ସେମାନେ ଆପଣାକୁ ଦାସୀ ଜାଣି ସର୍ବଦା କୃଷ୍ଣ ସେବାନନ୍ଦ ଭୋଗ କରୁ ଅଛନ୍ତି । ବ୍ରହ୍ମାନନ୍ଦ ସୁଖ ସେମାନଙ୍କଠାରେ

ଅତି ତୁଚ୍ଛ । ସେମାନେ ସଖୀମାନେ କୃଷ୍ଣ ସଙ୍ଗରୁ ଅନ୍ତର ନୁହନ୍ତି । କୃଷ୍ଣ ନରଭୂମିରେ ଅବତୀର୍ଣ୍ଣ ହୁଅନ୍ତି ସେମାନେ ମଧ୍ୟ ଗୋପରେ ଆସି ଜନ୍ମ ହେଲେ । କୃଷ୍ଣ ଅପ୍ରକଟ ହୁଅନ୍ତି ସେମାନେ ମଧ୍ୟ ଅପ୍ରକଟ ହେଲେ । ସେମାନେ ନିତ୍ୟସିଦ୍ଧା ଓ କାମରୂପା ରାଗାତ୍ମିକା ଭକ୍ତିର ପ୍ରକୃତ ଅଧିକାରୀ । ରାଗାତ୍ମିକା ଭକ୍ତି ତାଙ୍କ ଛଡ଼ା ଆଉ କାହାର ହୋଇ ନ ପାରେ । ସେହି ରାଗାତ୍ମିକାର ଅନୁକରଣରେ ଯେ ଭକ୍ତି ମାନବରେ ସମ୍ଭବେ ତାକୁ ରାଗାନୁଗା ଭକ୍ତି ଓ ତାହା କାମରୂପାର ଅନୁଯାୟୀ ହେଲେ କାମାନୁଗା ଓ ସମ୍ବନ୍ଧରୂପାର ଅନୁଯାୟୀ ହେଲେ ସମ୍ବନ୍ଧାନୁଗା ବୋଲାଯାଏ । ସମ୍ବନ୍ଧରୂପା ଭକ୍ତି ଶ୍ରୀନନ୍ଦ ଯଶୋଦାଙ୍କଠାରେ କମ୍ବା କୃଷ୍ଣଭ୍ରାତାମାନଙ୍କଠାରେ ବର୍ତ୍ତମାନ ।

---

## ୧୮ଶ ଅଧ୍ୟାୟ ।

ରାଗାନୁଗା ଭକ୍ତିଃ—କାମାନୁଗା ଓ ସମ୍ବନ୍ଧାନୁଗା । କାମାନୁଗା ଯଥାଃ—

କାମାନୁଗା ଭକ୍ତିସାଧନହିଁ ଅତି ଉତ୍କୃଷ୍ଟ ସାଧନ । ଏଥିରେ ସାଧକ ଗୁରୁଦତ୍ତ ନାମ, ରୂପ ଓ ବେଶ ମନ ମଧ୍ୟରେ ଏକାନ୍ତରେ ଭାବନା କରି ମାନସିକରେ ଆପଣାକୁ ବ୍ରଜରେ ମଞ୍ଜରୀମାନଙ୍କ ଅନୁବର୍ତ୍ତିନୀ ଦାସୀ ମାନି ଗୁରୁରୂପା ମଞ୍ଜରୀଙ୍କ ସଙ୍ଗେ ରହି ଓ ତାଙ୍କ ଆଜ୍ଞା ଘେନି ଶ୍ରୀରୂପ ମଞ୍ଜରୀଙ୍କ ନିୟୋଗମତେ ଶ୍ରୀରାଧାକୃଷ୍ଣଙ୍କ ସେବାରେ ନିଯୁକ୍ତ ହେବେ । ଏହିପରି ମାନସିକରେ ସେବା କରୁଁ କରୁଁ ତନ୍ମୟତା ଜାତ ହୁଏ ଓ ତତ୍ପରେ ସାଧନସିଦ୍ଧ ହେଲେ ସାଧକ ଦେହାନ୍ତେ ସିଦ୍ଧ ଦେହରେ ନିତ୍ୟସିଦ୍ଧା ଗୋପୀମାନଙ୍କ ମେଳରେ ରହି ବ୍ରଜରେ ଯୁଗଳ-ସେବାର ଅଧିକାରୀ ହୁଏ ।

ଗ୍ରନ୍ଥକାର ଗ୍ରନ୍ଥବାହୁଲ୍ୟ ଭୟରେ ଏଥିର ଉଦାହରଣ ଏ ଗ୍ରନ୍ଥରେ ଦେଇ ନ ଥିଲେହେଁ, ପାଠକମାନଙ୍କୁ ସୁବୋଧ ହେବା ନିମିତ୍ତ ମୁଁ ଦୁଇ ତିନୋଟି ଉଦାହରଣ ଭକ୍ତିରତ୍ନାକର ଓ ଶ୍ୟାମାନନ୍ଦ ପ୍ରକାଶରୁ ଉଦ୍ଧୃତ କଲି ।

ଶ୍ରୀଶ୍ରୀନିବାସାଚାର୍ଯ୍ୟ ଶ୍ରୀବୃନ୍ଦାବନ ଧାମରେ ବାସ କରୁଥିବା ସମୟରେ ଦିନେ ନବଦ୍ୱୀପର ଧ୍ୟାନ କରି ଶ୍ରୀଗୌରାଙ୍ଗ ମହାପ୍ରଭୁଙ୍କୁ ମାନସିକରେ

ସେବା କରୁଅଛନ୍ତି ଓ ସୁଗନ୍ଧ ଚନ୍ଦନ ଓ ପୁଷ୍ପ ତାଙ୍କୁ ପିନ୍ଧାଇଦେଇ ଚାମର ବ୍ୟଜନ କରୁ ଅଛନ୍ତି ; ଏମନ୍ତ ସମୟରେ ମହାପ୍ରଭୁ ପ୍ରୀତ ହୋଇ ନିଜ ଗଳାର ମାଳା ଶ୍ରୀନିବାସଙ୍କୁ ଉପହାର ଦେଲେ । ଶ୍ରୀନିବାସଙ୍କର ଧ୍ୟାନ ଭଙ୍ଗ ହୁଅନ୍ତେ ସେ ଦେଖିଲେ ପ୍ରଭୁ ଦତ୍ତମାଳା ଆପଣାର ଗଳାରେ ରହିଅଛି ; ମନ ଅବଶ୍ୟ ଆନନ୍ଦରେ ପୁଲକିତ ହେଲା କିନ୍ତୁ ଏହା ପ୍ରକାଶ ହେଲେ ଗର୍ବ ଜାତ ହେବ ଏହି ହେତୁ ସେ ଅପୂର୍ବ ସୁଗନ୍ଧମାଳାଟିକୁ ନିଜ ଦେହରୁ ବାହାର କରି ସଂଗୋପନ କରି ରଖିଲେ । ଅନ୍ତରଙ୍ଗ ସଙ୍ଗୀମାନେ କେବଳ ଜାଣିଥିବାରୁ ଏହାପରେ ପ୍ରକାଶ ହୋଇଅଛି । ଯଥା—

"ଆଶ୍ଚର୍ଯ୍ୟେର ବାହ୍ୟଜ୍ଞାନ ହୈଲ ହେନ କାଲେ
ପ୍ରଭୁ ଦତ୍ତମାଲା ଦେଖେ ଆପନାର ଗଲେ,
ଶ୍ରୀମାଲାର ଶୋଭା ସୌଗନ୍ଧେର ସୀମା ନାଇ,
ପ୍ରତିଦିକେ ଭ୍ରମର କରଯେ ଧାଓଆଧାଇ ;
ଆଶ୍ଚର୍ଯ୍ୟ କରିଲା ଶୀଘ୍ର ମାଲା ସଂଗୋପନ
ଅଲକ୍ଷିତେ ତାହା ଦେଖିଲେନ କୋନଜନ"

ଅଉଦିନେ ଶ୍ରୀନିବାସ ଶ୍ରୀରାଧାଗୋବିନ୍ଦଙ୍କର ହୋଲି ଖେଳ ମାନସିକରେ ଭାବୁଅଛନ୍ତି ଓ ଦେଖୁଛନ୍ତି ଯେ ପ୍ରେମୋନ୍ମତ୍ତା ଶ୍ରୀମତୀ ନିଜ ପ୍ରିୟସଖିମାନଙ୍କ ସହ ମିଳି ରସିକଶେଖର ଶ୍ରୀକୃଷ୍ଣଙ୍କ ଅଙ୍ଗରେ ଫଗୁ ନିକ୍ଷେପ କରୁଅଛନ୍ତି ଓ ସଖିଙ୍କ ଇଙ୍ଗିତାନୁସାରେ ଦାସୀଭାବରେ ଶ୍ରୀନିବାସ ଶ୍ରୀମତୀଙ୍କୁ ଫଗୁ ଯୋଗାଇ ଅଛନ୍ତି । ଶ୍ରୀକୃଷ୍ଣ ପ୍ରେମରେ ବିହ୍ୱଳ ହୋଇ ସମସ୍ତ ସଖୀ ଓ ମଞ୍ଜରୀମାନଙ୍କ ଉପରେ ଫଗୁ ବର୍ଷଣ କରୁଅଛନ୍ତି । ସେ ଖେଳ ସମାପନ ହୁଅନ୍ତେ ଶ୍ରୀନିବାସଙ୍କର ବାହ୍ୟଜ୍ଞାନ ହେଲା ; ନିଜ ଦେହକୁ ଚାହିଁ ଦେଖନ୍ତି ତାହା ଫଗୁମୟ ହୋଇଅଛି । ତାଙ୍କର ସେତେବେଳେ ଯେ ଆନନ୍ଦ ହୋଇଥିବ, କେବଳ ରସିକ ଭକ୍ତମାନେ କିଛି ଅନୁଭବ କରି ପାରିବେ । ମାଦୃଶ ଜନର ଲେଖନୀରେ ବ୍ୟକ୍ତକରିବାର ଚେଷ୍ଟା ବୃଥା । ଯଥା—

" ହୈଲ ସେବା ସମାଧାନ ବାହ୍ୟଜ୍ଞାନ ହୈତେ,
ଦେଖେ ଫାଗୁମୟ ଅଙ୍ଗ ନାରେ ଲୁକାଇତେ,

ଝଲମଲ କରେ ଫାଗୁ ସୌଗନ୍ଧ ଅପାର,
ସ୍ଥିର ହୋଇତେ ନାରେ ନାସା ସୁଗନ୍ଧ୍ୟ ଯାହାର ।”

ଶ୍ରୀନରୋତ୍ତମ ଠାକୁର—ଦିନକରେ ମାନସରେ ଶ୍ରୀରାଧାକୃଷ୍ଣ-ଲୀଳା ଭାବନା କରୁଅଛନ୍ତି ; ଲଳିତା ସଖୀଙ୍କ ଆଦେଶରେ ସେ ଦୁଗ୍ଧ ଆଉଟିବାକୁ ଲାଗିଲେ ଏବଂ ଏହି ସମୟରେ ଦୁଧ ଉତୁଳି ପଡ଼ିବାରୁ ସେ ବ୍ୟସ୍ତହୋଇ ତତଲା ଦୁଧଭାଣ୍ଡ ଶୀଘ୍ର ଚୂଲିରୁ ଓହ୍ଲାଇ ପକାଇଲେ ଓ ଆବର୍ତ୍ତିତ ଦୁଗ୍ଧ ଶୀତଳ କରି ସଖୀଙ୍କ ଶ୍ରୀକରକୁ ବଢ଼ାଇଦେଲେ । ବାହ୍ୟଜ୍ଞାନ ହୁଅନ୍ତେ ଦେଖନ୍ତି ହସ୍ତ ପୋଡ଼ି ଯାଇଅଛି । ପ୍ରତିଷ୍ଠାପ୍ରତି ନିତାନ୍ତ ଭୟ ଥିବାରୁ ସେ କନା ଗୁଡ଼ାଇ ତାହା ଲୁଚାଇଲେ । ଯଥା—

ହସ୍ତ ଦଗ୍ଧ ହୋଇଲ ତାହା କିଛୁ ସ୍ମୃତି ନାହିଁ,
ଦୁଗ୍ଧ ଆବର୍ତ୍ତନ କରି ଦିଲ ସଖୀ ଠାଇଁ ।
ମନେର ଆନନ୍ଦେ ରାଧାକୃଷ୍ଣେ ଭୁଞ୍ଜାଇଲ,
ଅବଶେଷ ଲଜ୍ୟ ମାନେ ବାହ୍ୟଜ୍ଞାନ ହୈଲ ।
ଦଗ୍ଧ ହସ୍ତ ବସ୍ତ୍ରେ ମାନ କୈଲା ସଙ୍ଗୋପନ,
ଜାନିଲେନ ମର୍ମୀ ଅନ୍ତରଙ୍ଗ କୋନଜନ ।

ଶ୍ରୀଶ୍ୟାମାନନ୍ଦ ମହାପ୍ରଭୁ—ଏ ଶ୍ରୀହୃଦୟଚୈତନ୍ୟଙ୍କର ଶିଷ୍ୟ ଥିଲେ, ଅର୍ଥାତ୍ ସଖ୍ୟ ରସର ପାତ୍ର । ଏହାଙ୍କର ନାମ ଥିଲା ଦୁଃଖୀ କୃଷ୍ଣଦାସ । ଏ ଗୁରୁଦେବଙ୍କ ଆଦେଶମତ କିଛିଦିନ ଶ୍ରୀବୃନ୍ଦାବନ ଧାମରେ ଶ୍ରୀଜୀବ ଗୋସ୍ୱାମୀଙ୍କ ନିକଟରେ ବାସ କରନ୍ତି ଓ କୁଞ୍ଜରେ ଝାଡ଼ୁସେବା କରନ୍ତି । ଦିନେ କୁଞ୍ଜ ପରିଷ୍କାର କରିବା ସମୟରେ କୌଣସି ଜ୍ୟୋତିଷ୍ମାନ୍ ପଦାର୍ଥ ତାଙ୍କ ନେତ୍ରରେ ପଡ଼ିଲା । ସେ ଦେଖନ୍ତି ଏହା ଅପୂର୍ବ ନୂପୁର ; ପାର୍ଥିବ ନୂପୁରରେ ଏପରି ଜ୍ୟୋତି ସମ୍ଭାବନା ନୁହେ । ତେଣୁ ସେ ନୂପୁରକୁ ପାଇ ପରମାନନ୍ଦ ଲାଭ କଲେ ଓ ନୂପୁରକୁ ଗୋପନରେ ରଖିଲେ । ସେ ମନେକଲେ ଦେଖାଯାଉ ଏଥିରେ ଅବଶ୍ୟ କିଛି ରହସ୍ୟ ଅଛି, ତାହା ଅବଶ୍ୟ ଉଦ୍‌ଘାଟିତ ହେବ । ଏମନ୍ତ ସମୟରେ ଏକ ବୃଦ୍ଧା ବ୍ରାହ୍ମଣୀ ଆସି ତାଙ୍କୁ ପଚାରିଲେ ; ମୋର ବଧୂ ବନକୁ ଆସିଥିଲା ସେ ଏକ ନୂପୁର ହଜାଇ ଯାଇଅଛି, ତୁମ୍ଭେ ତାହା ପାଇ ଅଛକି ? କୃଷ୍ଣଦାସ କହିଲେ,

ହିଁ ମୁଁ ଏକ ନୂପୁର ପାଇଅଛି ସତ୍ୟ କିନ୍ତୁ ସେତ ସେ ନୂପୁର ପର ବୋଧ ହେଉ ନାହିଁ । ପ୍ରକୃତ ତଥ୍ୟ କଣ ପ୍ରକାଶ କରନ୍ତୁ । ତହିଁରେ ବୁଢ଼ୀ ବ୍ରାହ୍ମଣୀ କହିଲେ, ସେ ଶ୍ରୀମତୀଙ୍କର ପଦର ନୂପୁର; କୁଞ୍ଜରେ କ୍ରୀଡ଼ା କରୁ କରୁ ଛାଡ଼ି ଯାଇଛନ୍ତି ଓ ମୁଁ ତାଙ୍କ ସହଚରୀ ଲଳିତା । ଏହା କହି ସେ ତାଙ୍କୁ ନିଜ ସ୍ୱରୂପ ଦେଖାଇଲେ ଓ କୃପାର ଚିହ୍ନସ୍ୱରୂପ ନୂପୁରର ଚିହ୍ନ ତାଙ୍କ ମସ୍ତକରେ ଦେଲେ ଓ କହିଲେ ତୁମ୍ଭେ ଶ୍ରୀମତୀଙ୍କର ନୂପୁର ପାଇ 'ଶ୍ୟାମାଙ୍କୁ ( ଶ୍ରୀରାଧାଙ୍କୁ ) ଆନନ୍ଦ ଦେଇଥିବାରୁ ତୁମ୍ଭ ନାମ ଆଜିଠାରୁ ଶ୍ୟାମାନନ୍ଦ ହେଲା, କିନ୍ତୁ ତୁମ୍ଭେ ଏ କଥା ଶ୍ରୀଜୀବ ଗୋସ୍ୱାମୀ ବ୍ୟତୀତ ଆଉ କାହାଠାରେ ପ୍ରକାଶ କରିବ ନାହିଁ । ସେହିଦିନଠାରୁ କୃଷ୍ଣଦାସ ସଖ୍ୟଭାବ ପରିତ୍ୟାଗ କରି ମଧୁର ରସାଶ୍ରିତ ହେଲେ । ଏଣେ ହୃଦୟଚୈତନ୍ୟ ଶୁଣିଲେ ତାଙ୍କ ପ୍ରିୟ ଶିଷ୍ୟ କୃଷ୍ଣଦାସ ତିଳକ ପରିବର୍ତ୍ତନ କରି ଜୀବ ଗୋସ୍ୱାମୀଙ୍କ ଆଶ୍ରିତ ହୋଇଅଛନ୍ତି; ଏହା ଶୁଣିବା ମାତ୍ରେ ସେ ବିସ୍ମିତ ଓ ସାତିଶୟ ଚିନ୍ତିତ ହେଲେ । ବିସ୍ମୟର କାରଣ ଏହି କି କୃଷ୍ଣଦାସ ପରି ବିନୀତ ଶିଷ୍ୟ ଯେ ଗୁରୁ ପରିତ୍ୟାଗ କରି ଅନ୍ୟ ଗୁରୁ ଗ୍ରହଣ କରିବ ଏହା ଅସମ୍ଭବ ; ଦୁଃଖର କାରଣ ଏହି କି, ଏହା ଯଦି ସତ୍ୟ ହୁଏ, ପ୍ରଥମ—ପ୍ରିୟ ଶିଷ୍ୟ କୃଷ୍ଣ ଦାସର ଅଧୋଗତି ହେବ ; ଦ୍ୱିତୀୟ—ବୈଷ୍ଣବ ସମାଜ ବିଶୃଙ୍ଖଳା ହୋଇ ପଡ଼ିବ । ଏହା କି ତାଙ୍କ ଦେହରେ ସହ୍ୟ ହୋଇପାରେ ? ସେ କେତେକ ମୂର୍ତ୍ତି ବୈଷ୍ଣବ ପଠାଇ ଶ୍ରୀଜୀବଙ୍କଠାକୁ ଓ ଦୁଃଖୀ କୃଷ୍ଣଦାସଙ୍କଠାକୁ ପତ୍ର ଲେଖିଲେ । ପତ୍ରରେ ଏମାନେ ଉତ୍ତର ଦେଲେ ଯେ ଶ୍ରୀଗୁରୁଦେବଙ୍କ ( ଅର୍ଥାତ୍ ହୃଦୟଚୈତନ୍ୟ ) ସ୍ୱପ୍ନାଦେଶରୁ କୃଷ୍ଣଦାସ ତିଳକ ପରିବର୍ତ୍ତନ କରିଅଛନ୍ତି । ଏହା ହୃଦୟ-ଚୈତନ୍ୟଙ୍କର ପ୍ରତୀତ ହେଲା ନାହିଁ । ବୈଷ୍ଣବ ଧର୍ମର କଳଙ୍କ ତାଙ୍କ ପରି ସାଧୁପୁରୁଷଙ୍କ ପକ୍ଷରେ ଅସହ୍ୟ ହୋଇ ଉଠିଲା । ସେ ସେହି କଳଙ୍କ ଅପନୋଦନ କରିବା ପାଇଁ ଅନ୍ୟାନ୍ୟ ମହାତ୍ମାମାନଙ୍କୁ ସଙ୍ଗରେ ନେଇ ଶ୍ରୀବୃନ୍ଦାବନ ଯାତ୍ରା କଲେ । ପାଠକେ ଭାବନ୍ତୁ ଏ କେଡ଼େ ବୃହତ୍ ବ୍ୟାପାର । ଅମ୍ବିକା କାଲନା କେଉଁଠାରେ ଓ ଶ୍ରୀବୃନ୍ଦାବନ କେଉଁଠାରେ ? ତେତେବେଳେ କିଛି ରେଲ ପଥର

ସୃଷ୍ଟି ହୋଇ ନ ଥିଲା । ଶ୍ରୀହୃଦୟଚୈତନ୍ୟ ଶ୍ରୀବୃନ୍ଦାବନରେ ପ୍ରବେଶ କରନ୍ତେ, ଶ୍ରୀଜୀବ ଓ ଶ୍ରୀକୃଷ୍ଣଦାସ ଆସି ପ୍ରଣାମ କଲେ ; ହୃଦୟ-ଚୈତନ୍ୟ ରାଗାନ୍ୱିତ ହୋଇ କହିଲେ, ହଁ ରେ କୃଷ୍ଣଦାସ ! ତୋର ଏପରି ମତି ଛନ୍ନ ହେଲା କପାଇଁ ? କୃଷ୍ଣଦାସ କାତର ହୋଇ କହିଲେ, ଗୁରୁଦେବ ! ଆପଣଙ୍କ ସ୍ୱପ୍ନାଦେଶ ଅନୁସାରେ ମୁଁ ଏହା କରିଅଛି ; କୃଷ୍ଣଦାସ ଗୁରୁଦେବଙ୍କୁ ପ୍ରବଞ୍ଚନା ବାକ୍ୟ କହି ନାହାନ୍ତି ; ସେପରି ସ୍ୱପ୍ନାଦେଶ ମଧ୍ୟ ହୋଇଥିଲା । ହୃଦୟଚୈତନ୍ୟ କହିଲେ କଣ, ମୋର ପ୍ରକାଶ ବଚନଠାରୁ ସ୍ୱପ୍ନର ବାକ୍ୟ ଅଧିକ ବଳବାନ୍ ହେଲା । ହେଉ, ଯଦି ମୁଁ ତୋର ନବ ତିଳକ ଓ ନବ ନାମ ଧୌତ କଲା ପରେ ତାହା ଧୋଇ ନ ଯାଇ ପୁନଃ ପ୍ରକାଶ ପାଇବ ତେବେ ଜାଣିବି ତୁ ମହାପ୍ରଭୁଙ୍କ କୃପା ପାଇଅଛୁ ଓ ତୋତେ ଯଥାର୍ଥ ସ୍ୱପ୍ନ ହୋଇଅଛି । କୃଷ୍ଣଦାସ ଉତ୍ତର କଲେ, ଯେ ଆଜ୍ଞା ; ତେବେ ମୋତେ ଦୁଇ ଦଣ୍ଡ ସମୟ ଦେଉନ୍ତୁ । ହୃଦୟାନନ୍ଦ ସେଥିରେ ସ୍ୱୀକୃତ ହେଲେ । କୃଷ୍ଣଦାସ ଯାଇ ଧ୍ୟାନରେ ବସିଲେ ଓ ସକାତରେ ଲଳିତାଙ୍କର କୃପା ଭିକ୍ଷା କଲେ । ସେ ତେତେବେଳେ ବ୍ରଜରେ କନକମଞ୍ଜରୀ ; ସେହିରୂପ ଓ ନାମରେ ଯାଇ କୁଞ୍ଜଦ୍ୱାରରେ କ୍ରନ୍ଦନ କରିବାକୁ ଲାଗିଲେ । ଲଳିତା ସଖୀ ଶ୍ରୀମତୀଙ୍କ ସମୀପରେ ଥିଲେ, ଏହାଙ୍କ କ୍ରନ୍ଦନ ବିଷୟ କାହାରଠାରୁ ଅବଗତ ହୋଇ ପାଖକୁ ଡକାଇ ନେଇ କ୍ରନ୍ଦନର କାରଣ ପଚାରିଲେ । କନକମଞ୍ଜରୀ ସମସ୍ତ ନିବେଦନ କଲେ । ଶ୍ରୀମତୀଜୀଉ ଏହା ଶୁଣି ସୁବଳଙ୍କୁ ଡକାଇ ତାଙ୍କ ଦ୍ୱାରା କନକମଞ୍ଜରୀଙ୍କ ( କୃଷ୍ଣଦାସ ) ନୂତନ ତିଳକ ଓ ଶ୍ୟାମାନନ୍ଦ ନାମ ସେ ଅଙ୍ଗରେ ଲେଖାଇ ଦେଲେ । ସୁବଳଙ୍କୁ ଡକାଇବାର କାରଣ ଏହିକି ସୁବଳହିଁ ଅମ୍ବିକାର ଗୌରୀ ଦାସ ଓ ହୃଦୟ-ଚୈତନ୍ୟଙ୍କ ଗୁରୁ । ଅତଏବ ପରମ ଗୁରୁଦେଉ ହେଲେ ମର୍ଯ୍ୟାଦା ଲଙ୍ଘନ ହେବ ନାହିଁ । ତତ୍ପରେ କୃଷ୍ଣଦାସଙ୍କର ଏଣେ ଧ୍ୟାନ ମୂର୍ଚ୍ଛା ଭଙ୍ଗ ହେଲା । ବିଷମ ପରୀକ୍ଷା ସ୍ଥଳରେ ଉପସ୍ଥିତ ହେଲେ । ସମସ୍ତ ବୈଷ୍ଣବମଣ୍ଡଳୀ ସମ୍ମୁଖ ହୋଇ ରହିଅଛନ୍ତି । ନାନାରୂପ ଭାବ ଲହରୀ ସମସ୍ତଙ୍କ ମନରେ ଖେଳା କରୁଅଛି । ହୃଦୟଚୈତନ୍ୟ ନିଜ କରରେ

କୃଷ୍ଣଦାସଙ୍କ ତିଳକ ଧୋଇବାକୁ ଲାଗିଲେ । ସେ ଯେତେ ଧୋଉ-ଥାଆନ୍ତି ତିଳକ ଓ ନାମ ତେତେ ଉଜ୍ଜ୍ୱଳ ଦିଶୁଥାଏ । ଆଜ୍ଞ ଗୁରୁଦେବ ଶିଷ୍ୟଠାରେ ପରାସ୍ତ ହେଲେ । ଏହା ଯେ ହୃଦୟଚୈତନ୍ୟଙ୍କୁ କିପରି ଗୌରବର କାରଣ ହେଲା ପାଠକେ ଶ୍ୟାମାନନ୍ଦ ପ୍ରକାଶାଦି ଗ୍ରନ୍ଥରୁ ଜାଣି ପାରିବେ । ବାହୁଲ୍ୟ ହେତୁ ମୁଁ ଏହିଠାରୁ କ୍ଷାନ୍ତ ହେଲି । ଏ ତ ୩୦୦ ବର୍ଷରୁ ଅଧିକର କଥା । ବ ୫୦।୬୦ ବର୍ଷ ମଧ୍ୟରେ କେନ୍ଦ୍ରାପଡ଼ାର ଭକ୍ତପ୍ରବର ଶ୍ରୀ ରାଧାଶ୍ୟାମ ନରେନ୍ଦ୍ର ଓ ରାଜାସାହେବଙ୍କ ପେସକାର ଶ୍ରୀକୃଷ୍ଣଚନ୍ଦ୍ର ବାବୁଙ୍କ ଅଲୌକିକ ମାନସିକ ସେବା ସମ୍ବନ୍ଧରେ ସେମାନଙ୍କ ନିଜ ସଙ୍ଗୀମାନଙ୍କଠାରୁ କିଛି କିଛି ଶୁଣିଅଛି । କିନ୍ତୁ ଗ୍ରନ୍ଥ-ବାହୁଲ୍ୟ ଭୟରେ ଉଲ୍ଲେଖ କଲି ନାହିଁ ।

ସାଧକର ଏହି ଅବସ୍ଥାକୁ ତଟସ୍ଥାବସ୍ଥା ବୋଲାଯାଏ ; ଉଚ୍ଚ ସାଧକମାନେ ଏହି ମର ସଂସାରରେ ରହି ମଧ୍ୟ ଚିନ୍ମୟରାଜ୍ୟର କାର୍ଯ୍ୟ ସମୟ ସମୟରେ ଦେଖିବାକୁ ପାଆନ୍ତି ଓ ମାନସିକରେ ଚିନ୍ମୟ-ରାଜ୍ୟରେ ବିଚରଣ କରନ୍ତି ।

---

## ୯ମଶ ଅଧ୍ୟାୟ ।

ଏ ଅଧ୍ୟାୟରେ ଗୋପୀମାନଙ୍କର କାମରୂପା ଭକ୍ତି ବିଷୟ ବର୍ଣ୍ଣିତ ହୋଇଅଛି ।

---

## ୧୦ଶ ଅଧ୍ୟାୟ ।

ସେହି କାମରୂପାର ଅନୁଗତ ସାଧନକୁ କାମାନୁଗା ବୋଲାଯାଏ । ଦଣ୍ଡକାରଣ୍ୟର ଋଷିମାନେ ଶ୍ରୀ ରାମଚନ୍ଦ୍ରଙ୍କୁ ଦେଖି ତାଙ୍କରୂପରେ ମୁଗ୍ଧ ହୋଇ କାମାନୁଗା ଭକ୍ତି ସାଧନ କରି ଦ୍ୱାପରଯୁଗରେ ଗୋପୀଦେହ ପ୍ରାପ୍ତ ହୋଇ ଶ୍ରୀକୃଷ୍ଣଙ୍କୁ ପତିରୂପେ ପ୍ରାପ୍ତ ହୋଇଥିଲେ । ଶ୍ରୀରାମାୟଣରେ ଏହା ଉଲ୍ଲେଖ ଅଛି ।

---

## ୧୧ଶ ଅଧ୍ୟାୟ ।

ସମ୍ବନ୍ଧରୂପା ଭକ୍ତି—ଗୋପରେ ଶ୍ରୀନନ୍ଦ ଯଶୋଦାଦି ପିତାମାତା ଓ ସଖାଗଣ ଏବଂ ପୁରରେ ଯାଦବାଦି ଏହି ଶ୍ରେଣୀର ଅଟନ୍ତି ।

---

## ୧୨ଶ ଅଧ୍ୟାୟ ।

ସମ୍ବନ୍ଧାନୁଗା ଭକ୍ତ—ପିତାମାତା ବା ପୁତ୍ର ବା ସଖାଆଦ ସମ୍ବନ୍ଧ ଶ୍ରୀକୃଷ୍ଣଙ୍କଠାରେ ଅର୍ପଣ କର ଯେ ଭକ୍ତି କରେ ସେ ଏହ ଶ୍ରେଣୀଭୁକ୍ତ । ବଗ୍ରହ ଓ ସ୍ୱରୂପ ଭିନ୍ନ ନୁହନ୍ତ । ଗ୍ରନ୍ଥରେ ବର୍ଣ୍ଣିତ ବର୍ଦ୍ଧକୀ ପର କେତେ କେତେ ଭକ୍ତ ପ୍ରତମାକୁ ପୁତ୍ରାଦ ସମ୍ବନ୍ଧରେ ଭାବ ଓ ତଦ୍ରୂପ ସ୍ନେହାଚରଣ କର ସିଦ୍ଧି ପ୍ରାପ୍ତ ହୋଇ ଅଛନ୍ତ । ଅଗ୍ରଦ୍ୱୀପର ଗୋପୀନାଥ ନଜପ୍ରିୟ ଭକ୍ତର ପୁତ୍ରତ୍ୱ ସ୍ୱୀକାର କର ପିଣ୍ଡଦାନ କରଥିବାରୁ ଠାକୁର ପିଣ୍ଡଦେବାର ପ୍ରଥା ଅଦ୍ୟାପି ଚଳଆସୁଛ ।

---

## ୧୩ଶ ଅଧ୍ୟାୟ ।

ଯେ ଯାହା ନରନ୍ତର ଭାବନା କରେ ମୃତ୍ୟୁପରେ ତାହାହିଁ ପ୍ରାପ୍ତ ହୁଏ । ଅତଏବ ଶ୍ରୀକୃଷ୍ଣ ଚରଣାରବନ୍ଦ ଅନବରତ ଚନ୍ତା କଲେ ନର ଅବଶ୍ୟ ସେ ଚରଣାରବନ୍ଦ ପ୍ରାପ୍ତ ହେବ । ତେଣୁ ଧନ ଦାର ସୁତରେ ମନୋଭିନବେଶ ନ କର ଶ୍ରୀକୃଷ୍ଣ ଚରଣାରବନ୍ଦରେ ମନ ଲଗାଇବା ସର୍ବତୋଭାବେ ବଧେୟ । ନାଚୁଆ ଯେପର ଜଳ କଳସ ମସ୍ତକରେ ରଖି ନୃତ୍ୟ କରେ ଓ ଅଙ୍ଗଭଙ୍ଗୀ ଦ୍ୱାର ସାଧାରଣର ମନ ତୃପ୍ତ କରେ କନ୍ତୁ ମନ ସର୍ବଦା ଜଳକଳସଠାରେ ରଖିଥାଏ ଯେପର କ କଳସଟି ପଡ଼ ନ ଯାଏ, ସେହପର ସଂସାରର ସମସ୍ତ କାର୍ଯ୍ୟ ସାଧନ କର ମଧ ମନ ଏକାନ୍ତରେ ଗୋବନ୍ଦ ଚରଣାରବନ୍ଦରେ ସଂଲଗ୍ନ କରବା ବଧେୟ ।

---

## ୧୪ଶ ଅଧ୍ୟାୟ ।

### ( ଭାବ ଭକ୍ତି )

ପ୍ରେମର ପ୍ରଥମ ଅବସ୍ଥାକୁ ଭାବ ବୋଲାଯାଏ । ଭାବଭକ୍ତି ପୁଣି ତନପ୍ରକାର ହେତୁରୁ ଉତ୍ପନ୍ନ ହୁଏ,—୧ ଅତ ଉତ୍ତମରୂପ ଭକ୍ତି ସାଧନରୁ, ୨ ଶ୍ରୀକୃଷ୍ଣଙ୍କ କୃପାରୁ ଓ ୩ ଭକ୍ତଙ୍କ କୃପାରୁ ।

ପ୍ରଥମ ପ୍ରକାର ଭାବହିଁ ସଚରାଚର ଦେଖାଯାଏ । ୨ୟ ଓ ୩ୟ ପ୍ରକାର ଭାବ ଜାତ ହେବା ଅତ ବରଳ । ଭକ୍ତ ନଜ ଚତ୍ତରେ ଭକ୍ତି

ଆସ୍ୱାଦନ କରୁଁ କରୁଁ ଅଙ୍ଗରେ ଯେ ବିକାର ଜାତହୁଏ ତାର ନାମ ଭାବ । ସେ ଭାବ ପରିପକ୍ୱ ହେଲେ ତାକୁ ପ୍ରେମ ବୋଲାଯାଏ । ଭାବର ଅନ୍ୟ ଏକ ନାମ ରତି । ଶ୍ରୀକୃଷ୍ଣ କୃଷ୍ଣଭକ୍ତଙ୍କର ରୂପ, ଗୁଣ, ବଂଶୀ, ଶୃଙ୍ଗ, ନୂପୁର ଆଦି ଏହି ରତିର କାରଣ ଓ ଏମାନଙ୍କୁ ବିଭାବ ବୋଲାଯାଏ । ଶ୍ରୀକୃଷ୍ଣଭାବ ଜାତ ହେଲେ ଦେହରେ ଅଷ୍ଟପ୍ରକାର ବିକାର ଜାତ ହୁଏ ତାକୁ ଅଷ୍ଟସାତ୍ତ୍ୱିକ ଭାବ ବୋଲାଯାଏ । ଯଥା—

୧ ସ୍ତମ୍ଭ, ୨ ସ୍ୱେଦ, ୩ ପୁଲକ, ୪ ସ୍ୱରଭଙ୍ଗ, ୫ କମ୍ପ, ୬ ବୈବର୍ଣ୍ଣ୍ୟ, ୭ ଅଶ୍ରୁ, ୮ ଜ୍ଞାନଶୂନ୍ୟତା । କାହାରଠାରେ ଏଥିମଧ୍ୟରୁ ୨ ବା ୪ ଓ କାହାଠାରେ ବା ସମସ୍ତ ୮ ଲକ୍ଷଣ ଦେଖାଯାଏ ।

---

## ୨୫ଶ ଅଧ୍ୟାୟ ।

ଦୃଢ଼ଭାବରେ ଭକ୍ତି ସାଧନ କରୁଁ କରୁଁ ଭକ୍ତ ହୃଦୟରେ ଭାବଭକ୍ତି ଜାତ ହୁଏ ।

ଶ୍ରୀକୃଷ୍ଣଙ୍କ କୃପାବଳରୁ ଯେ ଭାବ ଜାତ ହୁଏ ତାହା ଦୁଇପ୍ରକାର । (୧) ଆଜ୍ଞା ଓ (୨) ଅବଲୋକନ ।

ଆଜ୍ଞାରୁ ଯଥା ଶୁକାଦିଙ୍କର ।

ଅବଲୋକନରୁ ଯଥା ମଥୁରାବାସିଙ୍କର ।

ଶ୍ରୀକୃଷ୍ଣ ବିଗ୍ରହ ଦର୍ଶନ କରୁ କରୁ କାହାର କାହାରି ଯେ ଭାବ ଜାତ ହୁଏ ତାହା ମଧ୍ୟ ଏହି ଶ୍ରେଣୀ (ଅବଲୋକନ) ଭୁକ୍ତ ।

ଭକ୍ତ କୃପାରୁ ଯଥା ନାରଦଙ୍କ କୃପାରୁ ପ୍ରହ୍ଲାଦଙ୍କର ।

ପୂର୍ବ ଜନ୍ମର ସାଧନ ବଳରୁ ମଧ୍ୟ ଏ ଜନ୍ମ ବ୍ୟତିରେକେ କାହାର କାହାର ହଠାତ୍ ଭାବ ଜାତ ହୋଇଥାଏ । ତାହା ସାଧନରୁ ଜାତ ବୋଲି ବୋଲିବାକୁ ହେବ ।

---

## ୨୬ଶ ଅଧ୍ୟାୟ ।

ଭକ୍ତ ଅଙ୍ଗର ଯେଉଁ ବିକାରମାନ ଚିତ୍ତଗତ ଭାବକୁ ପ୍ରକାଶ କରି ହୁଏ ତାକୁ ଅନୁଭାବ ବୋଲାଯାଏ । ତାହା ନବପ୍ରକାର । ଯଥା—

କ୍ଷାନ୍ତି, ଅବ୍ୟର୍ଥକାଳତା, ବିରକ୍ତି, ମାନଶୂନ୍ୟତା, ଆଶାବନ୍ଧ, ସମୁତ୍କଣ୍ଠା, ହରିନାମ ଗାୟନରେ ରୁଚି, ଆସକ୍ତି ଓ ଶ୍ରୀକୃଷ୍ଣ ବସତି ସ୍ଥଳରେ ବାସେଚ୍ଛା । ଏ ସମସ୍ତ ସରଳଭାବରେ ମୂଳ ଗ୍ରନ୍ଥରେ ବର୍ଣ୍ଣିତ ହୋଇଅଛି ।

୧୭ ଓ ୧୮ଶ ଅଧ୍ୟାୟ ।

ନିଷ୍କାମ-ଭକ୍ତ ହୃଦୟରେ ଭାବ ଜାତ ହୁଏ । କୌଣସିପ୍ରକାର କାମନା ଥିଲେ ସେଥିରେ ଭାବ ଜାତ ହୁଏ ନାହିଁ, ଏମନ୍ତ କି ମୋକ୍ଷକାମୀ ବ୍ୟକ୍ତିର ମଧ୍ୟ ଭାବ ଜାତ ହେବା ଅସମ୍ଭବ । ଯଦି ସେପରି ବ୍ୟକ୍ତିଙ୍କଠାରେ ଭାବର ଚିହ୍ନ କିଛି ଦେଖାଯାଏ ତାକୁ ଭାବାଭାସ ଜାଣିବାକୁ ହେବ; ତାହା ପ୍ରକୃତ ଭାବ ନୁହେ ।

କାରଣ ଯେ ଚିତ୍ତରେ କାମନାର ଗନ୍ଧ ଥାଏ ତାହା ବିକାରଗ୍ରସ୍ତ । ଚିତ୍ତ ନିର୍ବିକାର ନ ହେଲେ ଭାବ ଜାତ ହୁଏ ନାହିଁ ।

ଭାବାଭାସ ଦୁଇପ୍ରକାର ଯଥା—ପ୍ରତିବିମ୍ବ ଓ ଛାୟା ।

ଭୋଗାଭିଳାଷୀ ଜନ କିମ୍ବା ମୋକ୍ଷକାମୀଗଣ ଅଭୀଷ୍ଟ ଲାଭ ଇଚ୍ଛାରେ ସଦାଗୃହନିଷ୍ଠ ନିଷ୍କାମୀ ଉଚ୍ଚଭକ୍ତଙ୍କ ସଙ୍ଗେ କୀର୍ତ୍ତନ କରୁଁ କରୁଁ ଭଗବତ୍ ଭକ୍ତର ସଙ୍ଗ ପ୍ରଭାବରୁ ସେମାନଙ୍କ ହୃଦୟରେ ଭକ୍ତଙ୍କ ହୃଦୟାକାଶରେ ବିରାଜିତ ଭାବଚନ୍ଦ୍ରର ପ୍ରତିବିମ୍ବ ଉଦୟ ହୁଏ, ଅର୍ଥାତ୍ ସାମାନ୍ୟ ଲକ୍ଷଣ ବିଶିଷ୍ଟ ଭାବ ଜାତ ହୁଏ ।

ଭଗବତ୍ ଭକ୍ତମାନେ ଜନ୍ମଯାତ୍ରାଦି ମହୋତ୍ସବ କରିବାବେଳେ ସେମାନଙ୍କ ସଙ୍ଗେ ଯୋଗଦେବାରୁ ଅଥବା ଶ୍ରୀବୃନ୍ଦାବନାଦିଧାମରେ ଉଚ୍ଚ ଉଚ୍ଚ ଭକ୍ତମାନଙ୍କ ସଙ୍ଗ ଲାଭ କରି ସାଧାରଣ ଲୋକମାନଙ୍କ ମନରେ ଯେ କୌତୁହଳମୟୀ ଚଞ୍ଚଳ ସାମାନ୍ୟ ରତିର ଉଦୟ ହୁଏ ତାହାକୁ ଭାବର ଛାୟା ବୋଲାଯାଏ । ମନୁଷ୍ୟ ଓ ତାର ଛାୟାର ଯେଉଁ ପ୍ରଭେଦ, ଭାବ ଓ ଭାବଛାୟାର ସେହି ପ୍ରଭେଦ ଜାଣିବ । ଏ ଭାବାଭାସ କ୍ରମେ କ୍ରମେ ବୃଦ୍ଧିପାଇ କାହା କାହାଠାରେ ଭାବରୂପକୁ ଧାରଣ କରେ । କିନ୍ତୁ ଭକ୍ତଠାରେ ଅପରାଧ ହେଲେ ଏ ଭାବାଭାସ ସମୂଳେ ବିନଷ୍ଟ ହୁଏ ।

ଭକ୍ତଙ୍କର ଯଦି ଦୋଷ ବର୍ତ୍ତମାନ ଥାଏ, ସେ ଦୋଷକୁ ଗ୍ରହଣ କରିବା ବିଧେୟ ନୁହେ । ମନୁଷ୍ୟର ଦୋଷ ସହଜରେ ବିନଷ୍ଟ ହୁଏ ନାହିଁ; ଭକ୍ତି ବିଷୟରେ ଲୋକର କ୍ରମେ କ୍ରମେ ଉନ୍ନତି ହୋଇଥାଏ । ଜନ ସାଧାରଣ ଭକ୍ତଙ୍କର ଗୁଣ ଗ୍ରହଣ କରିବାକୁ ସହଜରେ ପାରନ୍ତି

ନାହିଁ ; ଗୁଣପ୍ରତି ଦୃଷ୍ଟିପାତ ନ କରି ଅଳ୍ପମାତ୍ର ଦୋଷ ଦେଖିଲେହିଁ ତାକୁ ବହୁତ ମନେକରି ଭକ୍ତଙ୍କୁ ଘୃଣା କରନ୍ତି ; ତଦ୍ଦ୍ୱାରା ସେ ଭକ୍ତଙ୍କର ତ କିଛି ହାନି ହୁଏ ନାହିଁ ; କିନ୍ତୁ ତାହା ଦୋଷଦର୍ଶୀମାନଙ୍କର ମହା ଅନିଷ୍ଟର କାରଣ ହୋଇପଡ଼େ, କାରଣ ସେଥିରୁ ଯେ ଅପରାଧ ଜାତ ହୁଏ ତାହା ଅତି ଭୟଙ୍କର ଫଳ ଉତ୍ପାଦନ କରେ । ଶାସ୍ତ୍ରାନୁସାରେ ଦୋଷ ଗୁଣ କିଛି ନ ଦେଖିବାର ବିଧି ; ତେବେ ଦେଖିବାକୁ ହେଲେ ଗୁଣ ଦେଖିବାହିଁ ବିଧେୟ ।

୨୯ଶ ଅଧ୍ୟାୟ ।

ଭାବଭକ୍ତି ଗାଢ଼ ହେଲେ ତାହାକୁ ପ୍ରେମ ବୋଲାଯାଏ ; ଅର୍ଥାତ୍ ତହିଁରେ ସମୀଚୀନରୂପେ ଚିତ୍ତ ମସୃଣିତ ହୋଇ ଶ୍ରୀକୃଷ୍ଣଙ୍କଠାରେ ପ୍ରଗାଢ଼ ମମତା ଜାତ ହୁଅଇ । ସେ ପ୍ରେମ ଅନ୍ୟ ମମତା ବର୍ଜିତ ଓ ଐକାନ୍ତିକ କୃଷ୍ଣ ମମତା ପୂର୍ଣ୍ଣ । ଯାହାଠାରେ ବହୁ ସୌଭାଗ୍ୟରେ ସେ ପ୍ରେମ ଜାତ ହୁଏ ସେ ବ୍ୟକ୍ତି ଏକାବେଳକେ ଆପଣାକୁ ଭୁଲି ଯାଏ ଓ ଦିବାନିଶି କୃଷ୍ଣ ରସରେ ପ୍ରମତ୍ତ ହୁଏ । ଇନ୍ଦ୍ରିୟଗଣ ମନକୁ ଅବଲମ୍ବନ କରି ଆପଣା ଆପଣାର କାର୍ଯ୍ୟ ଅନୁଭବ କରନ୍ତି, କିନ୍ତୁ ପ୍ରେମଦ୍ୱାରା ମନ ସତତ କୃଷ୍ଣଙ୍କଠାରେ ମଗ୍ନ ରହିବାରୁ ଇନ୍ଦ୍ରିୟଜ୍ଞାନ ବିଲୁପ୍ତ ହୋଇଥାଏ ।

ଭକ୍ତମାଳରେ ବର୍ଣ୍ଣିତ ଅଛି ଯେ କୌଣସି ଭକ୍ତିମତୀ ସ୍ତ୍ରୀଲୋକ ନିଜ ଶିଶୁକୁ ସନ୍ନିକଟରେ ଶୁଆଇ ପରିବା ବନାଉ ବନାଉ ଦୂରରୁ ଶ୍ରୀକୃଷ୍ଣଲୀଳା ଗୀତ ଶ୍ରବଣ କରି ସେଥିରେ ଭୋଳା ହୋଇ ପାର୍ଶ୍ୱସ୍ଥିତ ଶିଶୁଟିକୁ କାଟିପକାଇଲେ । ଏକ ସମୟରେ କୌଣସି ପର୍ବୋପଲକ୍ଷରେ ଶ୍ରୀଜଗନ୍ନାଥଙ୍କ ଦେଉଳରେ ବିଶେଷ ଲୋକର ଭିଡ଼ ହୋଇଥିଲା । ଶ୍ରୀଜଗନ୍ନାଥ ଦର୍ଶନରେ ଉତ୍କଣ୍ଠିତା ଏକ ରମଣୀ ସେ ଭିଡ଼ରେ ଅସ୍ଥିରଚିତ୍ତା ହୋଇ ଗରୁଡ଼ସ୍ତମ୍ଭକୁ ଅବଲମ୍ବନ କରି ଶ୍ରୀଗୌରାଙ୍ଗ ମହାପ୍ରଭୁଙ୍କ ସ୍କନ୍ଧ ଉପରେ ପାଦ ଦେଇ ଶ୍ରୀଜଗନ୍ନାଥ ଦର୍ଶନ କରିବାକୁ ଲାଗିଲା । ଧନ୍ୟ ପ୍ରେମିକ ଭକ୍ତର ମହିମା । ତାହା କିଏ ସମ୍ବନ୍ଧରେ ପରିମାଣ କରିପାରିବ ।

୩୦ଶ ଅଧ୍ୟାୟ ।

ସେ ପ୍ରେମ ପୁଣି ତିନିପ୍ରକାର—ଯଥା ।

୧ ବୈଧ ଭାବୋତ୍ଥିତ ପ୍ରେମ, ୨ ରାଗାନୁଗୀୟ ପ୍ରେମ, ୩ ହରିଙ୍କ ପ୍ରସାଦୋତ୍ଥିତ ପ୍ରେମ ।

୧ । ବୈଧ ଭକ୍ତି ଯାଜନ କରୁ କରୁ ପ୍ରେମ ଜାତ ହେଲେ ତାହାକୁ ବୈଧଭକ୍ତ୍ୟୋତ୍ଥ ପ୍ରେମ ବୋଲଯାଏ ।

୨ । ରାଗାନୁଗା ପଥାନୁସରଣକାରୀ ଭକ୍ତଙ୍କଠାରେ ଯେ ପ୍ରେମ ଜାତ ହୁଏ ତାକୁ ରାଗାନୁଗୀୟ ପ୍ରେମ ବୋଲଯାଏ ।

୩ । ସାଧନ ବ୍ୟତିରେକେ କେବଳ ଶ୍ରୀକୃଷ୍ଣ କୃପା ବଶରୁ ପ୍ରେମର ଉଦୟ ହେଲେ ତାହାକୁ ପ୍ରସାଦୋତ୍ଥ ପ୍ରେମ ବୋଲଯାଏ ।

---

୩୧ଶ ଅଧ୍ୟାୟ ।

ଭକ୍ତିର କ୍ରମ ପଥ ।

୧ ଶ୍ରଦ୍ଧା, ୨ ସାଧୁସଙ୍ଗ, ୩ ସାଧନ ( ଭଜନ କ୍ରିୟା ), ୪ ଅନର୍ଥ-ନିବୃତ୍ତି ୫, ନିଷ୍ଠା, ୬ ରୁଚି, ୭ ଆସକ୍ତି, ୮ ଭାବ, ୯ ପ୍ରେମ ।

ପ୍ରେମ ଉତ୍ପନ୍ନ ହେଲେ ଭକ୍ତ କୃଷ୍ଣଙ୍କୁ ଲାଭ କରି ଅଭିଳାଷାନୁଯାୟୀ ସିଦ୍ଧ ଦେହରେ ଚିଦାନନ୍ଦଧାମ ଶ୍ରୀବୃନ୍ଦାବନରେ ଚିରକାଳ ବାସ କରେ । ନଦୀର ସ୍ରୋତ କ୍ରମେ ଉତ୍ପତ୍ତି ସ୍ଥାନରୁ ବହି ଆସି ସମୁଦ୍ରରେ ପଡ଼ିଲେ ତାହା ଯେପରି ଆଉ ଫେରି ଆସେ ନାହିଁ, ପ୍ରେମୀର ଚିତ୍ତ ସେହିପରି ଶ୍ରୀକୃଷ୍ଣ ଚରଣାରବିନ୍ଦରୁ ପ୍ରତ୍ୟାବୃତ୍ତ ହୁଏ ନାହିଁ ।

ସେ ଭକ୍ତ ପୁଣି ଦୁଇପ୍ରକାର, ସାଧନସିଦ୍ଧ ଓ କୃପାସିଦ୍ଧ। ଯେଉଁମାନେ ଭକ୍ତିଦ୍ୱାରା ସିଦ୍ଧି ପ୍ରାପ୍ତ ହୁଅନ୍ତି ସେମାନଙ୍କର ମହିମା ଅପାର; ଏମନ୍ତ କି ସେମାନେ ମୋକ୍ଷକୁ ମୋକ୍ଷ କରି ପାରନ୍ତି, ଏଣୁ ସିଦ୍ଧଭକ୍ତଙ୍କଠାରେ ମୁକ୍ତି ଅତି ତୁଚ୍ଛ ପଦାର୍ଥ । ସ୍ୱୟଂ ଶ୍ରୀକୃଷ୍ଣ ପରମ ସ୍ୱତନ୍ତ୍ର ହେଲେହେଁ ଭକ୍ତଙ୍କର ବଶ ହୁଅନ୍ତି ଓ ଏପରି ସିଦ୍ଧ ଭକ୍ତଙ୍କୁ ଦଣ୍ଡେମାତ୍ର ଛାଡ଼ି ନପାରି ସେମାନଙ୍କ ସଙ୍ଗେ ସଙ୍ଗେ ବିଚରଣ କରନ୍ତି ।

---

୩୨ଶ ଅଧ୍ୟାୟ ।

ଏ ଅଧ୍ୟାୟରେ ନିତ୍ୟ ଗୋଲୋକର ବର୍ଣ୍ଣନା ହୋଇଅଛି ।

---

୩୩ଶ ଅଧ୍ୟାୟ ।

ସୃଷ୍ଟିର ବିବରଣ ।

ନିତ୍ୟଗୋଲୋକରେ ଭଗବାନ ଶ୍ରୀକୃଷ୍ଣ ସର୍ବଦା ଲୀଳାପରିକରଙ୍କ ସଙ୍ଗେ ବର୍ତ୍ତମାନ । ଲୀଳା ପ୍ରକାଶ କରିବାକୁ ମନେକରନ୍ତେ ପ୍ରଥମେ ଆଦ୍ୟାଶକ୍ତି ତାଙ୍କଠାରୁ ଉତ୍ପନ୍ନ ହୁଅନ୍ତି, ସେ ଶକ୍ତି ସର୍ବଭୂତର ଜନନୀ

ଓ ସକଳ ତତ୍ତ୍ୱର ଆଦି । ତାକୁ ବିଷ୍ଣୁମାୟା ବୋଲିଯାଏ । ସେହି ମୂଳା ପ୍ରକୃତିଙ୍କଠାରୁ ବିରାଟ ପୁରୁଷ ଜାତ ହୁଅନ୍ତି, ଯାହାଙ୍କ ରୋମ ବିବରରୁ କୋଟି କୋଟି ବ୍ରହ୍ମାଣ୍ଡ ସୃଷ୍ଟି ହେଉଅଛି । ଏହି କ୍ରମରେ ସୃଷ୍ଟିର ବିବରଣ ଏ ଅଧ୍ୟାୟରେ ବର୍ଣ୍ଣିତ ହୋଇଅଛି ।

### ୩୪ଶ ଅଧ୍ୟାୟ ।

ଗୋଲୋକାଧିପତି ଶ୍ରୀକୃଷ୍ଣ ଗୋଲୋକର ନିତ୍ୟଲୀଳା ଏ ବ୍ରହ୍ମାଣ୍ଡରେ ପ୍ରକାଶ କରିବାର ଇଚ୍ଛା କରି ଦ୍ୱାପର ଯୁଗରେ ଧରାରେ ଜନ୍ମଗ୍ରହଣ କଲେ ଓ ତାଙ୍କ ସଙ୍ଗେ ନିତ୍ୟପରିକରମାନେ ମଧ୍ୟ କ୍ରମେ କ୍ରମେ ଆଗେ ପଛେ ଜନ୍ମ ହେଲେ ।

ସେ ଭଗବାନ ସ୍ୱୟଂ ପ୍ରକାଶ ହୋଇଥିଲେ, ଦେବକୀ ଗର୍ଭରୁ ଜାତ ବାଦମାନ ନତୁବା ଜନ୍ମକାଳରେ କିରୀଟ କୁଣ୍ଡଳାଦି ଭୂଷଣରେ ବିଭୂଷିତ ହୋଇ ଦେଖା ଦିଅନ୍ତେ ନାହିଁ ।

ବୈଷ୍ଣବ ଗ୍ରନ୍ଥରେ କୃଷ୍ଣଙ୍କ ଜନ୍ମ ସମ୍ବନ୍ଧେ ଓ ବାସୁଦେବ ଓ ନନ୍ଦନନ୍ଦନଙ୍କ ପାର୍ଥକ୍ୟାଦି ସମ୍ବନ୍ଧେ ଅନେକ ବିଚାର କରି ମୀମାଂସା କରି ରଖିଅଛନ୍ତି । ଏ ଗ୍ରନ୍ଥକାର ବୋଧହୁଏ ଗ୍ରନ୍ଥ ବାହୁଲ୍ୟ ଭୟରେ ସେସବୁ କିଛି ଉଲ୍ଲେଖ କରି ନାହାନ୍ତି ଓ ମୋର ଶକ୍ତିର ବାହାର ବୋଲି ମୁଁ ସେ ଗୁରୁତର ବିଷୟରେ ହସ୍ତକ୍ଷେପ କଲି ନାହିଁ ।

### ୩୫ଶ ଅଧ୍ୟାୟ ।

ବ୍ରହ୍ମାଣ୍ଡଗଣର ସୃଷ୍ଟି ସଙ୍ଗେ ସଙ୍ଗେ ପ୍ରଳୟ ଅଛି ଓ ମହା ପ୍ରଳୟରେ ବିରାଟ ପୁରୁଷ ମଧ୍ୟ ଲୀନ ହୁଅନ୍ତି, କିନ୍ତୁ ଗୋଲୋକଧାମ ନିତ୍ୟଧାମ ; ତାହାର ବିନାଶ ନାହିଁ । ଭକ୍ତି ବଳରେ ଭକ୍ତ ନିତ୍ୟଧାମରେ ପ୍ରବେଶ କଲେ ତାହାର ମଧ୍ୟ ବିନାଶ ହୁଏ ନାହିଁ ।

### ୩୬ଶ ଅଧ୍ୟାୟ ।

ଶ୍ରୀକୃଷ୍ଣହିଁ ମୂଳ ଓ ତେଣୁ କବିବର ପ୍ରାର୍ଥନା କରୁଛନ୍ତି ସେ ସେହି ଗୋପ-ଗୋପୀ-ବେଷ୍ଟିତ ରାଧିକାର ପ୍ରାଣନାଥ କମନୀୟ ଇନ୍ଦୀବର କାନ୍ତି ପୀତାମ୍ବର ଶ୍ରୀକୃଷ୍ଣ ସୁନ୍ଦର କରରେ ମୂରଲୀଧାରଣ କରି କଦମ୍ବ ମୂଳରେ ତ୍ରିଭଙ୍ଗି ଛନ୍ଦରେ କେବେ ତାକୁ ଦର୍ଶନ ଦେବେ । ସେହି ଶ୍ରୀକୃଷ୍ଣ ଅବତାରମାନଙ୍କର ବୀଜ ଅର୍ଥାତ୍ ଅବତାରୀ ଓ ନନ୍ଦଯଶୋଦାଙ୍କର ଆତ୍ମଜ ।

ଶ୍ରୀ ପାଦଛଚରଣ ଦାସ ।

# ଶ୍ରୀହରିଭକ୍ତି ଚନ୍ଦ୍ରୋଦୟ ।

## ପ୍ରଥମ ଅଧ୍ୟାୟ ।

( ତତ୍ତ୍ୱାତତ୍ତ୍ୱ ବର୍ଗ )

ବନ୍ଦଇ ପ୍ରଭୁ ଭଗବାନ । ଯେ ସର୍ବ ତତ୍ତ୍ୱଙ୍କ କାରଣ ।
ତାଙ୍କର ତହୁଁ ଏ ସକଳ । ହୁଅନ୍ତି ତେଣୁ ଆଦିମୂଳ ।
ତାଙ୍କର ନାହିଁ ଯହୁଁ ଆଦି । ସେ ଘେନି ବୋଲନ୍ତି ଅନାଦି ।
ଅନ୍ତହିଁ ନାହିଁ ତାହାଙ୍କର । ଅନନ୍ତ ନାମଟି ଅବର ।
ଚ୍ୟୁତ ନୋହିବାରୁ ଅଚ୍ୟୁତ । ଅନିତ୍ୟ ନୁହେ ତେଣୁ ନିତ୍ୟ ।
ଅବ୍ୟୟ ବ୍ୟୟ ନାହିଁ ଯାର । ଅକ୍ଷର ନୁହେ ଯେଣୁ କ୍ଷର ।
ଅସତ୍ୟ ନୁହେ ତେଣୁ ସତ୍ୟ । ଜିତ ନୋହିବାରୁ ଅଜିତ ।
ସକଳ ବ୍ୟାପୀ ତେଣୁ ପୂର୍ଣ୍ଣ । ନିର୍ମ୍ମଳ ଯେଣୁ ନିରଞ୍ଜନ ।
ମୃତ ନୋହିବାରୁ ଅମୃତ । ଅଜ ନୁହନ୍ତି ଯେଣ ଜାତ ।
ଅଘ ଆକର୍ଷନ୍ତି ଯେଣୁ । ଭକ୍ତଙ୍କୁ କୃଷ୍ଣ ନାମ ତେଣୁ ।
ହରନ୍ତି ଭକ୍ତ୍ୟ ପାପମାନ । ହରି ବୋଲିଣ ତେଣୁ ଜାଣ ।
ରମନ୍ତି ଯୋଗୀମାନେ ଅନ୍ତେ । ସେ ଯେନ ରାମ ସେ ଯୁଗତେ ।
ଯେଣୁ ସେ ନୁହନ୍ତି ନବୀନ । ସେ ଯେନ ବୋଲନ୍ତି ପୁରାଣ ।
ଉପାଧିମାନଙ୍କୁ ଅନ୍ତର । ସକଳ ଦେବଙ୍କ ଠାକୁର ।
ଇନ୍ଦ୍ରିୟ ଏକାଦଶଗଣ । ପଞ୍ଚ ଯେ ମହାଭୂତ ପୁଣ ।
ପଞ୍ଚ ତନ୍ମାତ୍ରାକୁ ଯେ ଘେନି । ମହତ ଅହଙ୍କାର ବେନି ।
ପ୍ରକୃତି ଘେନି ହେବେ ଜାଣ । ଚବିଶ ତତ୍ତ୍ୱ ଏହି ପୁଣ ।
ବ୍ରହ୍ମାଣ୍ଡ କାରଣଟି ଏହି । ସାଙ୍ଖ୍ୟ ମତରେ ଛନ୍ତି କହି ।

ଏ ଭଗବାନ ତହୁଁ ଜାତ । ଏଥୁ ସେ ବିଲଗ ଯୁଗତ ॥
ବ୍ରହ୍ମ ବୋଲିଣ ହାଦେ ଜାଣ । ଯାହା ବୋଲନ୍ତି ଯୋଗୀଗଣ ॥
ସେ ଜାଣ ଆତ୍ମା ସ୍ୱରୂପରେ । ପୂରି ଅଛନ୍ତି ବ୍ରହ୍ମାଣ୍ଡରେ ॥
ଘଟରୁ ବ୍ରହ୍ମ ଯାଏ ଜାଣ । ଅଛନ୍ତି ସକଳ ଘଟେଣ ॥
ଘନ ଆନନ୍ଦ ନିରାକାର । ଜ୍ୟୋତି ସ୍ୱରୂପ ଯେ ନିର୍ମଳ ॥
ଯାହାଙ୍କୁ ଯୋଗୀମାନେ ଚିନ୍ତେ । ଚିନ୍ତା ଯେ କରନ୍ତି ନିରନ୍ତେ ॥
ଷଡ଼ ଯେ ଚକ୍ରର ଉପରେ । ସହସ୍ର ଦଳ କମଳରେ ॥
ଜ୍ଞାନ ଚକ୍ଷୁରେ ତାଙ୍କୁ ପାଇ । ଯେ ସୁଖେ ରମୁଥାନ୍ତି ତହିଁ ॥
ଯେ ବ୍ରହ୍ମ ସେହି ଭଗବାନ । ବୋଲି ବୋଲନ୍ତି ଯୋଗୀଗଣ ॥
ବୈଷ୍ଣବମାନଙ୍କ ବିଚାର । ବ୍ରହ୍ମ ଆକାର ନିରାକାର ॥
ପ୍ରଭା ଆକାର ବେନି କରି । ଭଗତେ ଅଛନ୍ତି ବିଚାରି ॥
ଯେମନ୍ତ ପ୍ରଭା ମଣ୍ଡଳରେ । ରବିଙ୍କ ଆକାର ବେଢ଼ିରେ ॥
ଆକାରୁଁ ଜାତ ହୋଇ କରି । ପ୍ରଭା ଜଗତେ ଛନ୍ତି ପୂରି ॥
ସେହି ପ୍ରକାରେ ଭଗବାନ । ଆକାର ବ୍ରହ୍ମ ବୋଲି ଜାଣ ॥
ତାଙ୍କର ପ୍ରଭା ଜଗତରେ । ଅଛନ୍ତି ବ୍ରହ୍ମ ସ୍ୱରୂପରେ ॥
ଏ ଯେଣୁ ବ୍ରହ୍ମର କାରଣ । ଅଟନ୍ତି ପ୍ରଭୁ ଭଗବାନ ॥
ବ୍ରହ୍ମ ସଂହିତାରେ ଏ ବାଣୀ । କହି ଅଛନ୍ତି ଯାହା ପୁଣି ॥
ସହସ୍ର ନାମେ ଅଛି ଜାଣ । ସେ ବ୍ରହ୍ମ ବ୍ରହ୍ମ ବିବର୍ଦ୍ଧନ ॥
ହରିହ ସଂହିତା ଉକତି । ପ୍ରଭୁଙ୍କ ଚନ୍ଦ୍ର ନଖ କାନ୍ତି ॥
ବ୍ରହ୍ମର ଅଟନ୍ତି କାରଣ । ବ୍ରହ୍ମ ପ୍ରକାଶ ତହୁଁ ଜାଣ ॥
ଏ ଯେଣୁ କରି ଯେ ଆକାର । ବ୍ରହ୍ମ ଅଟନ୍ତି ପୀତାମ୍ବର ॥
ଯେ ନିରାକାର ବ୍ରହ୍ମ କହି । ଭଗବାନଙ୍କ ପ୍ରଭା ସେହି ॥
ବିରାଟ ବୋଲି ତାହା ଜାଣ । ଯେ କୋଟି ବ୍ରହ୍ମାଣ୍ଡ କାରଣ ॥
ବ୍ରହ୍ମାଣ୍ଡ ରେଣୁ ପ୍ରାୟେ ହୋଇ । ଯା ଲୋମମୂଳେ ଛନ୍ତି ରହି ॥
ଯାହାର ଏକ ଯେ ନିଃଶ୍ୱାସ । ବ୍ରହ୍ମାଙ୍କୁ ଅଟଇ ଆୟୁଷ ॥

ଏମନ୍ତ ଜାଣ ହାଦେ ଯେହୁ । ଭଗବାନଙ୍କ କଳା ସେହୁ ॥
ବ୍ରହ୍ମ ସଂହିତା ଏ ବଚନର । କହୁ ଅଛନ୍ତି ଜାଣ ଆର ॥
ଏ ହାଦେ ଅବତାର ନାମ । ଭଗବାନଙ୍କ କଳା ଜାଣ ॥
ସର୍ଜନ ପାଳନ କରନ୍ତି । ସେ ପୁଣି ଲେଉଟି ମିଶନ୍ତି ॥
ଏ ହେନ କର ଭଗବାନ । ସକଳ ତତ୍ତ୍ୱଙ୍କ କାରଣ ॥
ଯେତେକ ଅଛନ୍ତି ତତ୍ତ୍ୱ । ସବୁର କାରଣ ଅଚ୍ୟୁତ ॥
ପରମ ତତ୍ତ୍ୱ ଜାଣ ସେହୁ । ସମସ୍ତେ ଛନ୍ତି ତହିଁ ହୋଇ ॥
ସେ ପ୍ରଭୁ ନିତ୍ୟ ଗୋଲୋକରେ । ଅଛନ୍ତି ଲୀଳା ଯେ ସୁଖରେ ॥
ବିକାଶ ଇନ୍ଦୀବର କାନ୍ତି । ଲପନ କୋଟି ଚନ୍ଦ୍ର ଭାନ୍ତି ॥
ବରହ ଅବତଂଶ ଚୂଳ । କର୍ଣ୍ଣରେ ମକର କୁଣ୍ଡଳ ॥
ଚନ୍ଦନ ଚିତା ଲଲାଟରେ । କଟକ କଙ୍କଣ ଭୁଜରେ ॥
ଶ୍ରୀବତ୍ସ ଚିହ୍ନ ହୃଦେ ପୁଣି । ଆବର କଉସ୍ତୁଭ ମଣି ॥
କଟିରେ ସୁପୀତ ବସନ । ମେଖଳା କ୍ଷୁଦ୍ର ଘଣ୍ଟିଗଣ ॥
ଚରଣ ଯୁଗ ମନୋହର । ଶୋଭିତ ମୁଖର ନୂପୁର ॥
ରଙ୍ଗ ଅଧରେ ମନ୍ଦହାସ । ସମାନ ନୁହଇ ପୀୟୂଷ ॥
ସନ୍ତାନ ପାଦପର ମୂଳେ । ମଣି ନିର୍ମିତ ବେଦିକାରେ ॥
ଉପରେ ଘଟିତ କମଳ । ମଞ୍ଜୁଳ ସହସ୍ରେକ ଦଳ ॥
ମଧ୍ୟରେ ଅଷ୍ଟଦଳ ଜାଣ । କେଶର ମଧ୍ୟେ ଷଟକୋଣ ॥
ତହିଁରେ ଦିବ୍ୟ ଆସନରେ । ବିଜୟେ ଭକତ ସୋଦରେ ॥
ସନ୍ନିଧେ ବୃଷଭାନୁ ସୁତା । ଯେ ସେ ଜଗତ ଜନ ମାତା ॥
ତପତ କାଞ୍ଚନ ଗଉରୀ । ସେ ଯେ ଶ୍ରୀକୃଷ୍ଣ ମନୋହାରୀ ॥
ବିବିଧ ଆଭରଣ ହୋଇ । ପ୍ରଭୁ ସନ୍ନିଧେ ଛନ୍ତି ରହୁ ॥
ମନ ଲୋଚନ କୃଷ୍ଣଠାରେ । ନିବେଶି ଛନ୍ତି ପ୍ରେମ ଭରେ ॥
କୃଷ୍ଣରେ ଅନୁରାଗ ଶତ । ବେଳକୁ ବେଳ ଯେ ଉଦିତ ॥
ଯୁଗ୍ମଙ୍କ ଶତେ ଅନୁରାଗ । ସହଜେ ଅତ୍ୟନ୍ତ ସଂଯୋଗ ॥

ପରସ୍ପରରେ ସ୍ୱଗ ଜାତ । ବଚନେ ନୂହଇ କହିତ ।
ଦାସ୍ୟ ଯେ ସିଦ୍ଧା ଆଦି କରି । ପଞ୍ଚବିଧ ଯେ ଗୋପନାରୀ ।
ନିରନ୍ତେ ପ୍ରଭୁଙ୍କ ସେବାରେ । ଅଛନ୍ତି ଯତ୍ନର ବସ୍ତୁରେ ।
ସେ ପ୍ରେମ ନୟନେ ଅନାଇ । ମନ ଲୋଚନ କୃଷ୍ଣେ ଦେଇ ॥
ସବୁରି ସପ୍ରେମ ଯେ ମନ । କାହାରି ନାହିଁ ନା ଜଉନ ।
ଏ ଭାବେ ପ୍ରଭୁ ଭାବଗ୍ରାହୀ । ଦାସ୍ୟ ଗୋପୀଙ୍କେ ଛନ୍ତି ରହି ।
ଏ ଲୀଳା କହିବା ବସ୍ତୁରେ । ପ୍ରକାଶ ହୋଇଲେ ଗୋପରେ ।
ଦେବକୀ ଗର୍ଭରେ କପଟ । ସ୍ୱୟଂ ସେ ହୋଇଲେ ପ୍ରକଟ ।
ଶ୍ରୀ ଭାଗବତରେ ଏ ବାଣୀ । କହିଅଛନ୍ତି ଯାହା ମୁନି ।
ଦେବକୀ ଗର୍ଭ ଜନ୍ମ ବାକ । ବୋଲି ସେ କହିଛନ୍ତି ବେଦ ।
ଏ ଯେବେ ପରମ ଯେ ତତ୍ତ୍ୱ । ଅଟନ୍ତି ଗୋପେ ଗୋପୀନାଥ ।
ଅଖିଳ ରସାମୃତ ମୂର୍ତ୍ତି । ସେ ଯେ ରାଧାର ପ୍ରାଣପତି ।
ଯେ ନିଜ ପ୍ରକାଶ ରଚିଲେ । ତାରକା ପାଳିକା ବୋଧିଲେ ।
ସେ କୃଷ୍ଣ ଚରଣକୁ ଆଶ । ନିରନ୍ତେ କରେ ଭୀମ ଦାସ ।
ତାଙ୍କର ଚରଣ ଯୁଗଳ । ଏ ମୋର କରନ୍ତୁ ମଙ୍ଗଳ ।
ଶ୍ରୀ ଗୁରୁଙ୍କର ପାଦ ବନ୍ଦି । ନିରନ୍ତେ ଲଭୁ ମୋ ମୂର୍ଦ୍ଧନି ।
ନାମ ତାଙ୍କ ଦୟାନିଧି ଦାସ । ଶ୍ରୀକୃଷ୍ଣ ଭକ୍ତିରେ ବିଶ୍ୱାସ ।
ସେ କୃଷ୍ଣନାମ ଦୀକ୍ଷା ଦେଇ । କୃତାର୍ଥ କଲେ ମୋର ଦେହ ।
ମୁଁ ହୀନ ମୂଢ଼ ଯେ ପାମର । ନାହିଁ ଶ୍ରୀକୃଷ୍ଣ ଭକ୍ତି ମୋର ।
ବିଷୟ ଦ୍ୱନ୍ଦେ ବନ୍ଦ ହୋଇ । ଶ୍ରୀକୃଷ୍ଣ ଭକ୍ତି ନ କରଇଁ ।
ଭକ୍ତି ନ କଲେ ତ ଯୁଗତ । ବିଅର୍ଥ ହୋଇବ ଜୀବତ ।
ସେ ଯେବେ ହୋଇ ମୁଁ କାତର । ଚିନ୍ତା କରଇ ନିରନ୍ତର ।
ବିଚାର କରଇଁ ଚିତ୍ତରେ । ନିଶି ଦିବସ ନିରନ୍ତରେ ॥
କୃଷ୍ଣ ଚରଣ ଭକ୍ତି ଭାବ । କେବଣ ଉପାୟେ ହୋଇବ ।
ସେ କୋଟି ବ୍ରହ୍ମାଣ୍ଡ ଠାକୁର । ମୁଁ ତ କ୍ଷୁଦ୍ର ଜୀବ ଛାର ।

ତାଙ୍କର ଭକ୍ତି ସାଧନରେ । ମୋର କା ଶକ୍ୟ କି ବୋଲିବେ
ତଥାପି ଅପାର ଭରସା । କରି ମୁଁ ବଢ଼ାଇଛି ଆଶା ।
ସେ ଇଷ୍ଟ ଦେବତା ମୋହର । ଆବର ପ୍ରାଣର ଈଶ୍ୱର ।
ଜଗତ ପ୍ରଭୁ ଜାଣ ସେହି । ଜଗତ ଭିତରେ ତା ସୁହିଁ ।
ଏ ଯେବେ ମୋର ମନୋରଥ । ପୂର୍ଣ୍ଣ କରିବେ ଗୋପୀନାଥ ।
ଏଥୁଁ ଅନ୍ତରେ ଏବେ ଶୁଣ । ସାବଧାନରେ ସାଧୁଜନ ।
ଭକ୍ତି ତତ୍ତ୍ୱର ନିତ୍ୟ ହୋଇ । ବେଦମାନଙ୍କେ ଛନ୍ତି କହି ।
ପୁରାଣମାନଙ୍କେ ଆବର । ଅଛନ୍ତି ହୋଇଣ ବିସ୍ତାର ।
ଆବର ଭକ୍ତି ଗ୍ରନ୍ଥମାନ । ବହୁତ ଘେବେ ଛନ୍ତି ଜାଣ ।
ସେ ଭକ୍ତି ତତ୍ତ୍ୱର ଯେ ବାଣୀ । ଗୁରୁଙ୍କ ଠହୁଁ ମୁଁ ଯେ ଶୁଣି ।
ତାହା ଭାବନା କରି ଚିତ୍ତେ । ତତ୍ତ୍ୱର କରଇ ନିରତେ ।
ଭାଷା ଗୀତରେ କହିବଇଁ । ଭକ୍ତି ଅଭ୍ୟାସ ହେବାପାଇଁ ।
ଯେଭରେ ଜୀବଙ୍କର ହିତ । ଏଥୁଁ ଯେ ହୋଇବ ସୁଗତି ।
ଏ ଯେବେ କରି ସାଧୁଜନ । ମୋହର ଦୋଷ ଯେ ନ ଘେନ
ଏ ହରିଭକ୍ତି ଚନ୍ଦ୍ରୋଦୟ । ଦେଖି ନିର୍ମ୍ମଳ ଜନେ ହୁଅ ।
ଶ୍ରୀହରି ଚରିତ ଅମୃତ । ସିନ୍ଧୁରୁ ହୋଇଲା ଏ ଜାତ ।
ସାଧନ ଅଙ୍ଗ କଳାଧର । ତେଣୁ ସମ୍ପୂର୍ଣ୍ଣ ହୋଇ କର ।
ଦୋଷ ତତ୍ତ୍ୱର ତେଣୁ ନାହିଁ । ସେ ଯେବେ ଅକଳଙ୍କ ହୋଇ ।
ଏ ଜାଣ ହୋଇଲା ଉଦୟ । ସବୁ ଅଟଇ ସୁଧାମୟ ।
ଅସାଧୁ ଲପନ ନଳୀନ । ସହଜେ ହୋଇବ ମଳିନ ।
ସାଧୁଙ୍କ ମାନସ କୁମୁଦ । ଅଧିକେ ହୋଇବ ପ୍ରମୋଦ ।
ଭାବୁକମାନଙ୍କର ଭାବ । ସମ୍ଭୁ ଆନନ୍ଦେ ଉଛୁଳିବ ।
ସୁଜନନୟନ ଚକୋର । ଅମିୟ କରିବେ ଆହାର ।
ଯେ ସେ କଳୁଷ ତମମାନ । ଘୁଞ୍ଚିବେ କରିବେ ଶୟନ ।
ନିର୍ମ୍ମଳ ହୋଇଣ ଯେ ବେଗ । ଧରିବ ହରିଭକ୍ତି ମାର୍ଗ ।

ଏ ମେନ କରି ସାଧୁଜନ । ଏ ମୂଳ ଭକ୍ତିର କାରଣ ॥
ଯେ ଏହା ଶ୍ରବଣ କରିବେ । ଶ୍ରୀକୃଷ୍ଣ ଭକ୍ତି ସେ ଲଭିବେ ॥
ଭକ୍ତି ଲଭିଣ କୃଷ୍ଣପାଦ । ପାଇବେ ହୋଇଣ ଅନନ୍ଦ ॥
ଶ୍ରୀକୃଷ୍ଣ ରାଧିକା ରମଣ । ଗୋକୁଳ ଯୁବରାଜ ଜାଣ ॥
ତ୍ରିଭଙ୍ଗ ଛନ୍ଦରେ ବିଜୟେ । ମୁରଲି ବେଣୁ କରେ ଶୋହେ ॥
ଅଭୀର ନଟବର ବେଶ । ଭୀମ ଦାସର ତାଙ୍କୁ ଆଶ ॥
ତାଙ୍କ ଚରଣେ ଦେଇ ମତି । କହଇ କୃଷ୍ଣପାଦ ଭକ୍ତି ॥ ୧୨୫ ॥

ଇତି ଶ୍ରୀ ହରିଭକ୍ତିଚନ୍ଦ୍ରୋଦୟେ ଭଜନେ ତତ୍ତ୍ୱାତତ୍ତ୍ୱ ନିର୍ଣ୍ଣୟେ ନାମ ପ୍ରଥମୋଽଧ୍ୟାୟଃ ।

---

## ଦ୍ୱିତୀୟ ଅଧ୍ୟାୟ ।

(ଭକ୍ତି ଲକ୍ଷଣ)

ଏଥୁଅନ୍ତରେ ସାବଧାନେ । ଶୁଣିବା ସାଧୁଜନମାନେ ॥
ଶ୍ରୀକୃଷ୍ଣ ଭକ୍ତିର ଲକ୍ଷଣ । ଯେ ଯେ ପୁରାଣମାନଙ୍କେଣ ॥
ଯା ଋଷିମାନେ ଛନ୍ତି କହି । ଶୁଣିବା ସାବଧାନ ହୋଇ ॥
ଅନ୍ୟରେ ଅଭିଳାଷ ଶୂନ୍ୟ । ହୁଅଇ ଯହିଁ ହୃଦେ ମନ ॥
ଜ୍ଞାନ କର୍ମ ଯେ ବେଦ ଯୋଗ । ଏଥିରେ ନୋହିବ ସଂଯୋଗ ॥
ଅବର ଅନୁକୂଳ ଭାବେ । କୃଷ୍ଣ ଚରଣ ଯେହ୍ନେ ସେବେ ॥
ଭକ୍ତି ଲକ୍ଷଣ ସେହି ଜାଣ । ଆହୁର ସାବଧାନେ ଶୁଣ ॥
ନାରଦ ପଞ୍ଚରାତ୍ର ମତେ । ଭକ୍ତି ଲକ୍ଷଣ ଯେ ଯୁକତେ ॥
ସର୍ବ ଉପାଧି କରି ଦୂର । ଶ୍ରୀକୃଷ୍ଣ ସେବାରେ ନିର୍ମଳ ॥
ନିଜ ଇନ୍ଦ୍ରିୟମାନଙ୍କରେ । କୃଷ୍ଣ ସେବନ ଯେହ୍ନେ କରେ ॥
ଭକ୍ତିଲକ୍ଷଣ ଜାଣ ସେହି । ଆହୁରି ଶୁଣ ମନ ଦେଇ ॥
ଶ୍ରୀଭାଗବତ ତୃତୀୟରେ । ଯେ ଭକ୍ତିଲକ୍ଷଣ ବୋଲିଛରେ ॥
ଶ୍ରୀକୃଷ୍ଣ ସେବାରେ ଯୁକତେ । କହିବ ଅକାମନା ଚିତ୍ତେ ॥

ମଧ୍ୟରେ ଆନ କର୍ମମାନ । ମିଶ୍ରିତ ନ କରିବ ପୁଣ ॥
ଭକ୍ତିଲକ୍ଷଣ ଜାଣ ଏହି । ଏଥୁ ଶୁଣିବା ମନଦେଇ ॥
ଭକ୍ତିର ଅଚିନ୍ତ୍ୟ ମହିମା । ଭକ୍ତିଙ୍କ ନାହିଁ ନା ଉପମା ॥
ସେ ଭକ୍ତି ମହିମାଟି ପୁଣ । ଷଡ଼ ପ୍ରକାରେ ହୁଏ ଜାଣ ॥
ପ୍ରଥମେ ପାପ-ବିନାଶିନୀ । ଦ୍ୱିତୀୟେ ମୋକ୍ଷାଦି-ଦାୟିନୀ ॥
ତୃତୀୟେ ମୋକ୍ଷ ଲଘୁ କରେ । ଦୁର୍ଲ୍ଲଭ ଜାଣ ଚତୁର୍ଥରେ ॥
ପଞ୍ଚମେ ଅତ୍ମା ସୁଖଧାରୀ । ଷଷ୍ଠେ ଶ୍ରୀକୃଷ୍ଣ ବଶକାରୀ ॥
ଏ ଭାବେ ଷଡ଼ ଯେ ପ୍ରକାରେ । ଭକ୍ତିର ମହିମା ବେଭାରେ ॥
ତା ଏବେ ଏକ ଏକ କରି । କହିବି ଶୁଣିବା ଚତୁରି ॥
ପ୍ରଥମେ ପାପବିନାଶିନୀ । ମହିମା ଶୁଣିବାକୁ ପୁଣି ॥
ଗୋବିନ୍ଦ ମାହାତ୍ମ୍ୟ ବଚନ । କହିଅଛନ୍ତି ତାହା ଶୁଣ ॥
ଯେ ବର୍ତ୍ତମାନକାଳ ପାପ । ଭୂତକାଳର ଯେ ସ୍ୱରୂପ ॥
ଭବିଷ୍ୟକାଳେ ପାପ ଯେତେ । କରିବା ଥାନ୍ତି କର୍ମପଥେ ॥
ସେ ସବୁ ହୁଅନ୍ତି ଦହନ । ଗୋବିନ୍ଦ କୀର୍ତ୍ତନରୁ ଜାଣ ॥
ପଦ୍ମପୁରଣର ଯେ ବାଣୀ । ତା ସାବଧାନେ ଶୁଣ ପୁଣି ॥
ଭୋଗ ଯା କରୁଥାନ୍ତି ପୁଣ । ପ୍ରାଲବ୍ଧ ପାପ ସେଠି ଜାଣ ॥
ଭୋଗକୁ ଅନୁମୁଖ ହୋଇ । ବୀଜ ଯେ କୁଟେ ଥାନ୍ତି ରହି ॥
ସବୁ ତାଙ୍କର ହୁଏ ଦୂର । କୃଷ୍ଣ ଭକ୍ତିରେ ଆତ୍ମା ସାର ॥
ଏ ହେନ ପାପବିନାଶିନୀ । ଭକ୍ତିକି ବୋଲନ୍ତି ପୁଣି ॥
ଦ୍ୱିତୀୟେ ମୋକ୍ଷାଦି କାରଣ । ଭକ୍ତି ମହିମା ହାଦେ ଶୁଣ ॥
ଏ ଗୌତମୀ ତନ୍ତ୍ର ବାଣୀ । କହିଅଛନ୍ତି ଯାହା ପୁଣି ॥
ସକଳ ସିଦ୍ଧି ଭକ୍ତି ମୁକ୍ତି । ଶ୍ରୀକୃଷ୍ଣ ଭଜନରୁ ହୁନ୍ତି ॥
ଭକ୍ତି ଯେ ସୂର୍ଯ୍ୟୋଦୟ ବାଣୀ । ତାହା ଶୁଣିବା ହାଦେ ପୁଣି ॥
ଶ୍ରୀକୃଷ୍ଣ ଭକ୍ତି ଯେ ଲତାର । ମୋକ୍ଷ ଅଦରେ ଯେତେ ଫଳ ॥
ସବୁ ହୁଅନ୍ତି ତହିଁ ଜାତ । ଏ କଥା ଅଟଇ ସଂଗାତ ॥

ଏଣୁଟି ଭକ୍ତି ମୁକ୍ତି ଯେତେକ । ଭକ୍ତିର ହୁଅନ୍ତି ସମସ୍ତେ ॥
ଭକ୍ତେ କରନ୍ତି ଯାହା ଇଚ୍ଛା । ଭକ୍ତିରୁ ପୂରଇ ସେ ବାଞ୍ଛା ॥
ଏ ଯେଣୁ ମୋକ୍ଷାଦି କାରଣ । ଭକ୍ତିକି ବୋଲନ୍ତି ଯେ ଜାଣ ॥
ଭକ୍ତି ମୋକ୍ଷକୁ ଲଘୁ କରେ । ମହିମା ଶୁଣିବା ବେଦରେ ॥
ନାରଦ ପଞ୍ଚରାତ୍ର ବାଣୀ । କହୁଅଛନ୍ତି ଯାହା ପୁଣି ॥
ଭକ୍ତି ଯେ ମହାଦେବୀଙ୍କର । ମୁକ୍ତି ଯେ ଚେଟିକା ପ୍ରକାର ॥
ଅକ୍ରୂର ଶୁଣିବା ବଚନ । ଯେ ଭକ୍ତି କରଇ ସାଧନ ॥
ତାହାଙ୍କୁ ମୋକ୍ଷ ଯେ ଯୁଗତ । ହଶଇ ତୃଣର ସଙ୍ଘାତ ॥
ଏ ଯେଣୁ ମୋକ୍ଷ ଲଘୁ କରେ । ଭକ୍ତିର ମହିମା ବେଦରେ ॥
ଭକ୍ତି ଦୁର୍ଲ୍ଲଭ ହୋଏ ଜାଣ । ମହିମା ଶୁଣ ଦେଇ ମନ ॥
ଶ୍ରୀଭାଗବତ ପଞ୍ଚମରେ । ଯା କହୁଅଛନ୍ତି ବେଦରେ ॥
ଯେ ସେ ଅଟନ୍ତି ଭଗବାନ । ଯଦୁମାନଙ୍କ ପତି ଜାଣ ॥
ଗୁରୁ ଅଟନ୍ତି ଯଦୁଙ୍କର । ଦେବତା ଅଟନ୍ତି ଆବର ॥
ତାଙ୍କୁ ଭଜନ୍ତି ଯେଉଁ ଜନ । ସେ ତାଙ୍କୁ ହୁଅନ୍ତି ପ୍ରସନ୍ନ ॥
ମୁକ୍ତି ଦିଅନ୍ତି ଜାଣ ବେଗ । କଠୋରେ ଦ୍ୟନ୍ତି ଭକ୍ତି ଯୋଗ ॥
ଏଯେଣୁ ଭକ୍ତି ଯେ ଦୁର୍ଲ୍ଲଭ । ସୁଖେ ହୁଅନ୍ତି ସେ ଯେ ଲଭ୍ୟ ॥
ନାରଦ ସୁଖ ଅମ୍ଭା କହ । ଭକ୍ତିକି ଅଛନ୍ତି ବାଗ୍ରହ ॥
ତାହା ଶୁଣିବା ସାବଧାନେ । ଯା କହୁଛନ୍ତି ଋଷିମାନେ ॥
ବ୍ରହ୍ମ ଆନନ୍ଦ ସୁଖ ଭାବ । ସର୍ବ ଗୁଣ ତା କହବ ॥
ସେ ଭକ୍ତି ସୁଖସିନ୍ଧୁ ତାର । କଣାମାତ୍ରକୁ ନୁହେ ସର ॥
ଯେ ଭକ୍ତି ସୁଧୋଦୟ ବାଣୀ । କହୁଅଛନ୍ତି ଯାହା ପୁଣି ॥
ଯେ ଭକ୍ତି ସୁଖ ସାଗରରେ । ମଜ୍ଜିଣ ଥାଅନ୍ତି ବେଦରେ ॥
ସେ ସର୍ବ ସୁଖସିନ୍ଧୁ ମାନ । ନୁହନ୍ତି ଗୋଷ୍ପଦ ସମାନ ॥
ଏ ଯେଣୁ ଭକ୍ତେ ବାଗ୍ରହ । ନାରଦ ସୁଖ ଅମ୍ଭା କହ ॥
କୃଷ୍ଣଭକ୍ତିକି ଛନ୍ଦ କହ । ଏଥୁ ଶୁଣିବା ମନଦେଇ ॥

କୃଷ୍ଣଙ୍କୁ କରେ ଭକ୍ତି ବଶ । ମହିମା ଶୁଣିବା ବିଶେଷ ।
ଶ୍ରୀଭାଗବତେ ଏକାଦଶେ । ଗୁପତେ ଉଦ୍ଧବଙ୍କ ପାଶେ ।
ଶ୍ରୀମୁଖେ ଭଣନ୍ତି ଆଜ୍ଞା ଦେଇ । ଶୁଣ ଉଦ୍ଧବ ମନ ଦେଇ ।
ଯମ ନିୟମ ଯେ ସହିତେ । ଅଷ୍ଟାଙ୍ଗ ଯୋଗ ଜାଣ ଯେତେ ।
ସାଙ୍ଖ୍ୟ ସହିତେ ହାବେ ଜାଣ । ସକଳ ବେଦ ଅଧ୍ୟୟନ ।
ଯେତେକ ଅଛି ତପମାର୍ଗ । ଆଉର ସକଳ ଯେ ତ୍ୟାଗ ।
ଏ ବଶ ନ କରନ୍ତି ମୋତେ । ମୋ ଭକ୍ତିଯୋଗ ଟି ଯେମନ୍ତେ ।
ମତେ କରନ୍ତି ଜାଣ ବଶ । ଏ କି ପାଇବେ ତହିଁ ଲେଶ ।
ଏ ହେତୁ କର କୃଷ୍ଣ ଭକ୍ତି । କୃଷ୍ଣଙ୍କୁ ବଶ ଯେ କରନ୍ତି ।
ସ୍ୱଜନେ ସାବଧାନ କର । ଏହା ଯେ ଗୁପତ ବିସ୍ତର ।
ପୁରାଣମାନଙ୍କେ ଗୁପତ । ଏହି ଭକ୍ତିର ମୂଳ ତତ୍ତ୍ୱ ।
ଭକ୍ତିର ମୋକ୍ଷଫଳ ଏହି । ପ୍ରଭୁଙ୍କୁ ବଶ ସେ କରଇ ।
ସିଦ୍ଧ ହୁଅଇ ଭକ୍ତି ଯାର । ଶ୍ରୀକୃଷ୍ଣ ଭକ୍ତିଟି ତାଙ୍କର ।
ଏ ମୋକ୍ଷାଦିରେ ହାବେ ଜାଣ । ଭକ୍ତି ବିଭୂତି ଫଳମାନ ।
ସେ ଜାଣ ଅଜାନ୍ତର ଫଳ । ଭକ୍ତିର ନୁହନ୍ତି ସେ ମୂଳ ।
ଭକ୍ତିସାଧନ ଯନ୍ତ୍ର ଭାବେ । ମିଳନ୍ତି ତାଙ୍କର ସ୍ୱଭାବେ ।
କୃଷ୍ଣଙ୍କୁ ଉପଗତ ହୁନ୍ତି । ଯେ ତା ଇଚ୍ଛନ୍ତି ସେ ତା ପାନ୍ତି ।
ଯେ କିଛି ବାଞ୍ଛା ନ କରଣ । ଭଜନ୍ତି ଶ୍ରୀକୃଷ୍ଣ ଚରଣ ।
ନିଷ୍କାମ ଭକ୍ତି ଜାଣ ସେହି । ସେ ଭକ୍ତିଫଳ ଗୁଣ ଏହି ।
କୃଷ୍ଣ ହୁଅନ୍ତି ତାର ବଶ । ନିରନ୍ତେ ଥାନ୍ତି ତାର ପାଶ ।
ତାହାର ଭକ୍ତି ଅନୁସାରେ । ନେଇ ରଖନ୍ତି ସମୀପରେ ।
ସେ କୃଷ୍ଣ ଚରଣକୁ ଆଶ । ନିରନ୍ତେ କହେ ଭୀମଦାସ ।୮୫।

ଇତି ଶ୍ରୀ ହରିଭକ୍ତିଚନ୍ଦ୍ରୋଦୟ ଭଜନେ ଭକ୍ତିଲକ୍ଷଣ ବର୍ଣ୍ଣନେ
ନାମ ଦ୍ୱିତୀୟୋଽଧ୍ୟାୟଃ ।

## ତୃତୀୟ ଅଧ୍ୟାୟ ।

ସୁଜନେ ସାବଧାନ କର । ଶ୍ରୀକୃଷ୍ଣ ଭକ୍ତିର ବିଚାର ॥
ଭକ୍ତି ସାଧନ କର ବାରେ । ଯେତେକ ବିଧିଟି ବେଭାରେ ॥
ତାହା ଶୁଣିବା ମନ ଦେଇ । ଯା ଋଷିମାନେ ଛନ୍ତି କହି ॥
ସମସ୍ତ ଭକ୍ତିର ବିଚାର । କହିବ ନିଜକର୍ମ କରି ॥
ନିଜ କରମ ଭକତିର । କେବଳ ଭଣେଟି ବିଚାର ॥
ଯେ ନିତ୍ୟକର୍ମ ହାଦେ ଜାଣ । ନ କଲେ ନାଶଯାନ୍ତି ଜନ ॥
କଲେ କିଛିହିଁ ଫଳ ନାହିଁ । ବେଦେ ଅଛନ୍ତି ଏହା କହି ॥
ଶ୍ରୀକୃଷ୍ଣ ଭକ୍ତି ଯେ ଯୁଗତ । ନ କଲେ ନାଶଯାନ୍ତି ସତ ॥
କଲେ ସକଳ ଫଳମାନ । ଲଭନ୍ତି ମୋକ୍ଷ ସହିତେଣ ॥
ନ କଲେ ନାଶ ସହୁଁ ହୁନ୍ତି । ସେ ଯେବେ ଋଷି କହୁଛନ୍ତି ॥
ଭକ୍ତିର ନିତ୍ୟ ବିଧି କରି । ସମସ୍ତେ କରିବେ ବିଚାର ॥
ଏଥୁ ଶୁଣିବା ମନ ଦେଇ । ପଦ୍ମ ପୁରାଣେ ଛନ୍ତି କହି ॥
ଭକ୍ତି କରନ୍ତି ଯେଉଁ ଜନ । ନ କଲେ ବିଧି କର୍ମମାନ ॥
ଯାଗ ତପସ୍ୟା ଆଦି ଯେତେ । ଯେତେକ ବିଧି ବେଦମତେ ॥
ନ କଲେ କଲେ ସେ ସକଳ । କୃଷ୍ଣ ଭଜନେ ଅତ୍ମା ଯାର ॥
ସେ ବିଧି କର୍ମମାନ ଶୁଣି । କିଙ୍କର ପ୍ରାୟେ ତାଙ୍କୁ ଜାଣି ॥
ଭକ୍ତି ନ କଲେ ଜାଣ ଯେହୁ । ସବୁ ଅକର୍ମ କଲେ ସେହୁ ॥
ଗୋ ହତ୍ୟା ବ୍ରହ୍ମ ହତ୍ୟା ଜାଣ । ଗୁରୁତଳ୍ପଗ ସୁରାପାନ ॥
ଏ ଆଦି ପାପ କର୍ମ ଯେତେ । ନ କଲେ କଲେ ସେ ଯୁଗତେ ॥
ନରକେ ପଡ଼ନ୍ତି ସେ ପୁଣ । ତହିଁ ବିଚାର ହାଦେ ଶୁଣ ॥
ଯା ମୁଖ ଭୁଜରୁ ଯୁଗତ । ଜାନୁ ଚରଣୁ ହେଲେ ଜାତ ॥
ବ୍ରହ୍ମ କ୍ଷତ୍ରିୟ ବୈଶ୍ୟ ଜାଣ । ଶୂଦ୍ର ସହିତେ ଚାରି ବର୍ଣ୍ଣ ॥
ଏଣୁ ସେ ସବୁର ପିତାର । ଆଦର ବ୍ରହ୍ମାଣ୍ଡ ଈଶ୍ୱର ॥
ଯେ ପୁଣ ତାଙ୍କୁ ନ ଭଜନ୍ତି । ବେଭାରେ ନରକେ ପଡ଼ନ୍ତି ॥

ଏ ଯେଣୁ ଭକ୍ତି କଲେ ଯେହୁ । ସବୁ ସ୍ୱକର୍ମ କଲେ ସେହୁ ।
ଆହୁରି ଶ୍ରୀମୁଖ ବଚନ । ଯେ ଅଛୁ ଶୁଣ ସାବଧାନ ।
ଶ୍ରୀ ଏକାଦଶ ଭାଗବତେ । ଉଦ୍ଧବ ଆଗରେ ସୁଗତେ ।
ଉଦ୍ଧବ ଯେତେ କର୍ମମାନ । ଯାଗ ତପସ୍ୟା ତୀର୍ଥଦାନ ।
ଯେ ଧର୍ମ ମାନଟି ସୁଗତେ । କହିଲ ଅଛୁ ବେଦ ମତେ ।
ସେ ବେଦ ମାନନ୍ତ ମୋ ଆଜ୍ଞା । ତାହା ଯେ କରଣ ଅବଜ୍ଞା ।
ମୋର ଭକ୍ତିରେ କର ଶ୍ରମ । ସେ ଜାଣ ପୁରୁଷ ଉତ୍ତମ ।
ତାଙ୍କ ଉପରେ ଅଧିକାର । ବେଭାରେ ନୁହଇ ଅମ୍ଭର ।
ଆହୁରି ଏହି ଏକାଦଶେ । କହିଅଛନ୍ତି ଯାହା ବ୍ୟାସେ ।
ଦେବତା ଋଷି ଭୂତମାନ । ଅବର ତାର ପିତୃଗଣ ।
ଏମାନଙ୍କର କର୍ମ ଯେତେ । ଭକ୍ତେ ଯେ ନ କଲେ ସୁଗତେ ।
ଏମାନଙ୍କର ଅଧିକାର । ନ ଥାଇ ଭକ୍ତଙ୍କ ଉପର ।
ଯେ ପିତୃ ଋଣି ଯେ ନୁହନ୍ତି । ଏମନ୍ତ ବୋଲି କହୁଛନ୍ତି ।
ଅନୁର ଶୁଣ ମନ ଦେଇ । ନାରଦ ଋଷି ଛନ୍ତି କହି ।
ବ୍ୟାସଙ୍କୁ କହୁଛନ୍ତି ପୁଣି । ପ୍ରଥମ ସ୍କନ୍ଧର ଏ ବାଣୀ ।
ତେଜି ଆପଣା ଧର୍ମମାନ । ଯେ କରେ ଶ୍ରୀକୃଷ୍ଣ ଭଜନ ।
ସେ ଭକ୍ତି ପାକ ନୋହୁଥାଇ । ତାଙ୍କର ମୃତ୍ୟୁ ଯଦି ହୋଇ ।
ଅଭଦ୍ର ନୋହେ ତାହାଙ୍କରେ । ସେ ପୁଣି ଅନ୍ୟ ଜନମରେ ।
ସେ ଭକ୍ତି ବାସନା ଯେ ଯେଣୁ । ଭକ୍ତି କରନ୍ତି ଜାଣ ପୁଣି ।
ସ୍ୱଧର୍ମ ଯେଉଁମାନେ କରେ । ତାଙ୍କର କିଅର୍ଥ ବେଭାରେ ।
ଏ ଯେଣୁ ସକଳ ଯେ ଜୀବ । ଶ୍ରୀକୃଷ୍ଣ ଚରଣେ ଭଜିବ ।
ଯେ କୃଷ୍ଣ ଭକ୍ତି ନ କରିବେ । ସେ କର୍ମ ବେଭାରେ କରିବେ ।
ନ କଲେ ହୋଇବେ ପତିତ । ଏ ହାଦେ ଅଟଇ ସୁଗତ ।
ଆହୁରି ଶୁଣ ସାଧୁଜନ । ଭକ୍ତେ ନିଷେଧ କର୍ମମାନ ।
ହରିବ ବରଣ ଯେବେ କରେ । ଭକ୍ତଙ୍କୁ ନ ଲାଗେ ବେଭାରେ ।

ତାଙ୍କର ପ୍ରାୟଶ୍ଚିତ୍ତ ନାହିଁ । ଏମନ୍ତ ବୋଲ'ଛନ୍ତି ବେଦ ।
ଅତଏବ ଭକ୍ତିର ବିଚାର । ସୁଜନେ ସାବଧାନ କର ।
ଭକ୍ତି ଯେ କରନ୍ତେ ସାଧନ । ଦଇବ ବଶେ ହେଲେ ବିଘ୍ନ ।
ତହିଁରେ ଦୋଷ ଯେ ନୁହଇ । ଆବର ପ୍ରାୟଶ୍ଚିତ୍ତ ନାହିଁ ।
ନାଶ ନୁହଇ ସେହୁ ଜାଣ । ଲେଉଟି କରନ୍ତେ ସାଧନ ।
ଯେ ଆନ କର୍ମମାନେ ଛନ୍ତି । ତା କର୍ମମାନ କରୁଥାନ୍ତି ।
ବିଘ୍ନ ହୋଇଲେ କର୍ମ ନାଶ । ତହୁଁ ଉପୁଜେ ପୁଣି ଦୋଷ ।
ସେ ଦୋଷ ପାଇଁ ପୁଣି ଦାନ । ଲେଖି ଅଛନ୍ତି ଶାସ୍ତ୍ରେ ଜାଣ ।
ଅତଏବ ଶୁଣ ସାଧୁଜନ । ଯେ ଜନ ଅଜ୍ଞାନ ପଣେଣ ।
କାମନାମାନ ଚିତ୍ତେ ଧରି । କୃଷ୍ଣ ଭଜନ ଜାଣି କରି ।
ତାହାକୁ ପ୍ରଭୁ ଭାବଗ୍ରାହୀ । କାମନା ଫଳ ଯେ ନ ଦେଇ ।
ଦିଅନ୍ତି ପାଦ ଅରବିନ୍ଦ । ଯହିଁରୁ ଜାତ ସଦାନନ୍ଦ ।
କୁମାର୍ଗେ ଯାଇ ନ ଦିଅନ୍ତି । ଶୁଣିମା ତହିଁର ଯୁକତି ।
ମୃତ୍ତିକା ଖାଆନ୍ତେ ବାଳକ । ତା ଯଦି ଦେଖନ୍ତି ଜନକ ।
ସେ ମାଟି ଛଡ଼ାଇ ସତ୍ୱରେ । ସାକର ଦିଅନ୍ତି ତାକରେ ।
ସେହି ପ୍ରକାରେ ଶାସ୍ତ୍ରେ ଜାଣ । କରନ୍ତି ପ୍ରଭୁ ଭଗବାନ ।
ଏ ହେତୁ କହି ସାଧୁଜନେ । ସଂଶୟେ ନ ବିଚାର ମନେ ।
ବିଧି ନିଷେଧ କର୍ମମାନ । ଦୂର ସେ କରଣ ବନ୍ଧନ ।
ଯେ ନିଜ ସ୍ୱଧର୍ମ ବିଚାର । ତାହା କରଣ ବେଗେ ଦୂର ।
ଭକ୍ତିକି ନାଶ୍ୟ ବୋଧ କରି । ବିଘ୍ନକୁ ଆଶଙ୍କା ନ କରି ।
ଜ୍ଞାନେ ଅଜ୍ଞାନେ ସାରି ଭଜ । ତରନ୍ତେ ପ୍ରଭୁ ଦେବରାଜ ।
ଦେଖ ଏ ଭବ ଯେ ସାଗର । ପୂରିଛି ଅତି ଭୟଙ୍କର ।
କୃଷ୍ଣ ଭଜନ କରି ଜାଣ । ହେବ ଏ ଗୋଷ୍ପଦ ସମାନ ।
ଲଙ୍ଘିବେ ଶୀଘ୍ର ତାକୁ ତେଣିଂ । କିଛିହିଁ ଶ୍ରମ ଥିବ ନାହିଁ ।

ସେ କୃଷ୍ଣ ଭକ୍ତି କହନ୍ତରେ । ଭୀମ ଚନ୍ଦ୍ରଇ ନିରନ୍ତରେ ॥
କୃଷ୍ଣ ଚରଣ କରି ଆଶ । କହିଲା କୃଷ୍ଣ-ଭକ୍ତି ରସ । ୭୫ ॥

ଇତି ଶ୍ରୀ ହରିଭକ୍ତିଚନ୍ଦ୍ରୋଦୟେ ଭଜନେ ଭକ୍ତିବର୍ଦ୍ଧ ବିସ୍ତର ନାମ ତୃତୀୟୋଽଧ୍ୟାୟଃ ॥

---

## ଚତୁର୍ଥ ଅଧ୍ୟାୟ ।
( କର୍ମବନ୍ଧ ବିସ୍ତର )

ଏଥୁ ଉତ୍ତାରୁ ସାବଧାନେ । ଶୁଣିବା ସାଧୁଜନମାନେ ॥
ଯେ କର୍ମ ବନ୍ଧର ବିସ୍ତର । ଯେମନ୍ତ ଆତଯାତ ତାର ॥
ବ୍ରହ୍ମାଣ୍ଡ ଭିତରେ ଭ୍ରମଣ । ଅଛନ୍ତି ଯେତେ ଜୀବମାନ ॥
ଯେ ଶୁଭ କର୍ମଟି ବେଭାରେ । ବେଦ ବିସ୍ତରେ ଜାଣି କରେ ॥
ଯାଗ ତପସ୍ୟା ବ୍ରତ ଦାନ । ଏଆଦି ସର୍ବ କର୍ମମାନ ॥
ସେ କର୍ମ-ଫଳଙ୍କର ବଳେ । ଭୋଗ ଭୁଞ୍ଜନ୍ତି ସୁରଆଳେ ॥
କାଳେ ହୋଇଲେ କର୍ମ କ୍ଷୀଣ । ତହୁଁ ପଡ଼ନ୍ତି ହାବେ ଜାଣ ॥
ପୁଣି ସେ ଜନ୍ମନ୍ତି ସଂସାରେ । ଯେ ନିଜ କର୍ମ ଅନୁସାରେ ॥
ଯଦି ସେ ପାପଟି କରନ୍ତି । ସେ ପାପୁଁ ନାଶ ସେ ହୁଅନ୍ତି ॥
ତାଙ୍କର ଅଧୋଗତି ହୋଇ । ନରକେ ପଡ଼ନ୍ତି ସେ ଯାଇ ॥
ନରକ କରନ୍ତି ପହାର । ସେହି ନରକ ତାଙ୍କ ଘର ॥
ଅନେକ ପାଉଥାନ୍ତି ଦୁଃଖ । କହିଁ ଥିବଟି ତହିଁ ସୁଖ ॥
ପୁଣି ସେ ବାହାର ହୁଅନ୍ତି । ଅନେକ ଯୋନି ସେ ବୁଲନ୍ତି ॥
ଯେବେ ସେ ପାପ ଭୋଗଯାଏ । ମନୁଷ୍ୟ ତନୁ ତେବେ ପାଏ ॥
ସେ ପୁଣି ମନୁଷ୍ୟ ତନୁରେ । ଯେ କର୍ମ କରନ୍ତି ବେଭାରେ ॥
ଶୁଭ କର୍ମରେ ଶୁଭ କଥା । କୁକର୍ମେ କୁକର୍ମ ବ୍ୟବସ୍ଥା ॥
ଏ ଭାବେ କର୍ମର ବିସ୍ତର । ଜୀବ ଭ୍ରମନ୍ତି ନିରନ୍ତର ॥
ଜନମ ହୋଇଲେ ମରନ୍ତି । ମଲେ ପୁଣିହଁ ଜନମନ୍ତି ॥
ପ୍ରଳୟମାନ ଯଦି ହୁଏ । କର୍ମର ନାଶ ଜାଣ ନୁହେ ॥

ଜୀବକୁ ଯେନ ସେ ବେଭରେ । ରହନ୍ତି ଜୀବର ଆକାରେ ॥
ପ୍ରଳୟ ଅନ୍ତେ ସେହି କର୍ମ । ଜୀବକୁ କରନ୍ତି ଜନମ ॥
ଏ ଯେନକର ଛନ୍ତି କହି । ଜୀବମାନଙ୍କ କର୍ମ ଯେହି ॥
ଶତେକ କୋଟି କଳ୍ପ ଗଲେ । ନାଶ ନହଇ କର୍ମ ଭଲେ ॥
ଅବଶ୍ୟ ଭୋଗ ସେ ହୁଅଇ । ଯେ ଶୁଭାଶୁଭ କର୍ମ ଥାଇ ॥
ଆବର ଶୁଣିବା ବଚର । ଯେ ଶୁଭ କର୍ମମାନ କର ॥
କରନ୍ତି ସ୍ୱର୍ଗ ଭୋଗମାନ । ତହୁଁ ବଅର୍ଥ ବୋଲି ଜାଣ ॥
ପାର୍ବତୀ ଅଟେ ପଶୁପତି । ପଦ୍ମପୁରାଣେ କହୁଛନ୍ତି ॥
କର୍ମ ବନ୍ଧରେ ପଡ଼ି ଜନ । ନରକେ ଭ୍ରମନ୍ତି ଗୋ ଜାଣ ॥
ଯେ ବଡ଼ ଭୋଗ ଗୋ ସ୍ୱର୍ଗରେ । କଷ୍ଟ ସେ ନୁହେଁଟି ବେଭାରେ ॥
ଯାଗ ତପସ୍ୟାମାନ କର । ଅନେକ କ୍ଲେଶ ଯା ଆଚର ॥
ଅନେକ କଷ୍ଟ ଥାନ୍ତି ପାଇ । ସେ ପୁଣି ନିଷ୍ଫଳ ନୁହଇ ॥
ଦୁଃଖ ମିଶ୍ରିତ ଯେ କୁଟିଳ । ଶୁଣିବା ତହିଁର ବଚର ॥
ଗରଳ ମିଶା ସ୍ୱାଦୁ ଅନ୍ନ । ଭୋଜନ କରନ୍ତେ ଯେପନ ॥
ପ୍ରଥମେ ଭୋଜନ କରନ୍ତି । ମୁଖ ମଧୁର ସ୍ୱାଦୁ ପାନ୍ତି ॥
ପ୍ରାନ୍ତରେ ଧାରଇ ଗରଳ । ସେ ଯେଷ୍ଟେ ହୁଅନ୍ତି ଆକୁଳ ॥
ସେହି ପ୍ରକାରେ ସ୍ୱର୍ଗ ସୁଖ । ବୋଲି କହିଲେ ପଞ୍ଚମୁଖ ॥
ଏ କଥା ନୁହେଁ କି ପ୍ରମାଣ । ସେ କର୍ମ ବନ୍ଧ ସିନା ଜାଣ ॥
ମାନବେ ଘୋଷ ପାଠ ବେଦ । ଭକ୍ତିର ବିଶେଷ କି ପୁଣି ॥
ଏ ଯେତେ କର୍ମ କର ଦୂର । ହରି ଭକ୍ତି କି ଆଶ୍ରେ କର ॥
ଯେ କୃଷ୍ଣ ଭଜନ କରନ୍ତି । ସେ କର୍ମବନ୍ଧ ବିନାଶନ୍ତି ॥
କୃଷ୍ଣ ତାହାଙ୍କୁ ବେଗ କରି । ନରକୁଁ ନଅନ୍ତି ଉଦ୍ଧରି ॥
ଏଥିରେ ସଂଶୟ ନ କର । ଶୁଣିବା ଏଥିର ବଚର ॥
ଶ୍ରୀ ଭଗବତ ଯେ ଗୀତାରେ । ଆଜ୍ଞା ହୋଇଛି ଶ୍ରୀମୁଖରେ ॥
ସକଳ ଧର୍ମ କର ତ୍ୟାଗ । ମତେ ଶରଣ ପଶ ବେଗ ॥

ମୁଁ ସର୍ବ ପାପରୁ ତୁମ୍ଭର । ରକ୍ଷା କରିବି ନ ଡରିଅ ॥
ଏମନ୍ତ ଛନ୍ଦ ପ୍ରଭୁ କହି । ନିଜ ଶ୍ରୀମୁଖେ ଅଜ୍ଞାଦେଇ ॥
ଏହା କେ କରନ୍ତି ଆନ । ଯେ ପୂର୍ଣ ଶ୍ରୀମୁଖ ବଚନ ॥
ଏବେଣୀ କର୍ମ କଥ ଦୂର । ବେଗେ ଶ୍ରୀକୃଷ୍ଣ ଭକ୍ତି କର ॥
ଭକ୍ତି ଲଭିଲେ କୃଷ୍ଣପାଶ । ଗୋଲୋକ ଲଭିବ ଅବଶ୍ୟ ॥
ଭକ୍ତି ବାହାରେ ଆନେ ପାର । ନାହିଁଟି ସଂଶୟ ନ କର ॥
କୃଷ୍ଣ ଭକ୍ତି କର ଆଣ । କହଇ ଶିଶୁ ଭୀମଦାସ । ୩୧ ।

ଇତି ଶ୍ରୀହରିଭକ୍ତିଚନ୍ଦ୍ରୋଦୟେ ଭଜନେ କର୍ମବନ୍ଧ ବର୍ଣ୍ଣନେ
ନାମ ଚତୁର୍ଥୋଽଧ୍ୟାୟଃ ।

---

## ପଞ୍ଚମ ଅଧ୍ୟାୟ ।

( ଭକ୍ତି ଅଧିକାର )

ଏଥୁ ଅନ୍ତରେ କଥା ଶୁଣ । ସାବଧାନରେ ସାଧୁଜନ ॥
ଯେ ଯେ ଭକ୍ତିରେ ଅଧିକାରୀ । ତାହାଙ୍କୁ ଶୁଣିବା ବିଚାରି ॥
ବ୍ରହ୍ମ କ୍ଷତ୍ରିୟ ବୈଶ୍ୟ ଜାଣ । ଶୂଦ୍ର ସହିତେ ଚାରିବର୍ଣ୍ଣ ॥
ଏଆଦି ଜାଣ ଯେତେ ଜାତି । ଚଣ୍ଡାଳଯାଏ ଯେତେ ଛନ୍ତି ॥
ଏଆଦି ନାରୀ ଯେ ଯେତେକ । ଆବର ବର୍ଣ୍ଣହୀନ ଲୋକ ॥
ସବୁରି ଅଧିକାର ଜାଣ । କୃଷ୍ଣ ଭକ୍ତିରେ ହାଦେ ପୁଣ ॥
ଏକଥା ପଦ୍ମପୁରାଣରେ । ଦିଲ୍ଲୀପରାଜାଙ୍କ ଆଗରେ ॥
ବଶିଷ୍ଠ ଋଷି ଛନ୍ତି କହି । ମନ୍ଦ ସ୍ନାହାନ କଥଠାଇ ॥
କହି ଅଛନ୍ତି ମୁନିବର । ମାଘ ସ୍ନାହାନେ ଅଧିକାର ॥
ସବୁରି ହୁଏଟି ଦେହରେ । ଯେମନ୍ତ କୃଷ୍ଣ ଭକତରେ ॥
ସବୁରି ଅଧିକାର ଜାଣ । ସେହିପ୍ରକାରେ ହାଦେ ପୁଣ ॥
ଏମନ୍ତ ଦୃଷ୍ଟାନ୍ତ ଦେଖାଇ । ଋଷି ପୁରାଣେ ଛନ୍ତି କହି ॥
ଏଣୁ ଭକ୍ତିରେ ଅଧିକାର । ଅବ୍ରହ୍ମ ଆଦି ଚଣ୍ଡାଳର ॥

ଅଙ୍କୁର ଶୁଣିବା ବଚନ । ଆଉର ନାନା ଜୀବମାନ ।
ସବୁର ଅଛି ଅଧିକାର । ଯେ ସେ ଶ୍ରୀକୃଷ୍ଣ ଭଗତର ।
ତନ୍ତ୍ରେ ଅଛନ୍ତି ଏହା କହୁ । ମନ୍ତ୍ର ପକ୍ଷୀ ବୃକ୍ଷର ଠାଇଁ ।
ସମସ୍ତ ବର୍ଣ୍ଣମାନଙ୍କର । ସମସ୍ତ ଆଶ୍ରମ ଆଦ୍ୟର ।
ଆଉର ନାରୀଗଣମାନ । ବିବିଧ ଜାତି ଜୀବଗଣ ।
ଭଜିବେ ଗୋପାଳ ଯେମନ୍ତେ । ଏମନ୍ତ କହନ୍ତି ତନ୍ତ୍ରେ ।
ଏହେଣୁ ସବୁ ଜୀବଙ୍କର । କୃଷ୍ଣ ଭକ୍ତିରେ ଅଧିକାର ।
ଏ କଥା ପ୍ରତ୍ୟକ୍ଷରେ ଦେଖ । ବ୍ୟାଧ କୁବୁଜାଁ ଗଜ କାକ ।
ଏମାନଙ୍କର ଭକ୍ତି ଯେଣୁ । ସବୁରି ଅଧିକାର ପୁଣି ।
ଯେ ଅଧିକାରିଙ୍କ ଲକ୍ଷଣ । ତା ଏବେ ସାବଧାନେ ଶୁଣ ।
ଶ୍ରୀମୁଖେ ଉଦ୍ଧବଙ୍କ ପାଶେ । କହିଅଛନ୍ତି ଏକାଦଶେ ।
ତାଙ୍କର ଯହିଁ ଶ୍ରଦ୍ଧା ଜନ୍ମ । ମୋର କଥାରେ ହୁଏ ଜାଣ ।
ତାହା ଧରଣ ଗୁଣ ତତ୍ତ୍ୱେ । ମୋ କଥା ବର୍ଣ୍ଣନ୍ତି ନିତ୍ୟେ ।
ସଂସାରେ ନୋହେ ଆସକତ । ତଥାପି ନୋହେ ବିରକତ ।
ତାଙ୍କର ଭକ୍ତି ଯୋଗ ଜାଣି । ସିଦ୍ଧ ହୁଅନ୍ତି ହାଦେ ପୁଣି ।
ସେ ହୁଏ ତ୍ରିବ ଯେ ପ୍ରକାର । ଉତ୍ତମ ମଧ୍ୟମ ଆଉର ।
କନିଷ୍ଠ କୃପା ସିଦ୍ଧା ବର । ଋଷି ଯେ ଅଛନ୍ତି ବର୍ଣ୍ଣର ।
ଜନେ ଶୁଣିବା ହାଦେ ତାହୁ । ଉତ୍ତମ ଭକ୍ତି ଜାଣ ଯେହୁ ।
ଶାସ୍ତ୍ରରେ ଅଟନ୍ତି ନିପୁଣ । ଶ୍ରଦ୍ଧା ବହୁତ ଥାଇ ଜାଣ ।
ଭକ୍ତିରେ ଦୃଢ଼ ଯେ ତାଙ୍କର । ମଧ୍ୟରେ ନ କରେ ଅନ୍ତର ।
ଏମନ୍ତ ଅଧିକାରୀ ଯେହୁ । ଉତ୍ତମ ଭକ୍ତି ଜାଣ ସେହୁ ।।
ଏବେ ମଧ୍ୟମ ଭକ୍ତି ଶୁଣ । ଶାସ୍ତ୍ରରେ ନୁହନ୍ତି ନିପୁଣ ।
କେବଳ ଶ୍ରଦ୍ଧା ଯେ ବହୁତ । ସେ ଜାଣ ମଧ୍ୟମ ଯେ ଭକ୍ତ ।
ଯେ ଶାସ୍ତ୍ରେ ନୁହନ୍ତି ନିପୁଣ । ଅଳପ ଶ୍ରଦ୍ଧା ଥାଇ ଜାଣ ।
ସେ ଯେ କନିଷ୍ଠ ଅଧିକାରୀ । ଅଳପ ଶ୍ରଦ୍ଧା ଯେଣୁ କରି ।

କୃପାସିଦ୍ଧାଙ୍କ କଥା ଶୁଣ । ଶାସ୍ତ୍ରହିଁ ନ ଜାଣନ୍ତି ପୁଣ ॥
ଶ୍ରଦ୍ଧାତ ନ ଥାଇ ଯୁଗତ । ଭକ୍ତି ସାଧନ ନ କରନ୍ତି ॥
ଶ୍ରୀ ଭଗବାନ କୃପା ଯେନ । ଭକ୍ତି ହୁଅଇ ଜାତ ପୂର୍ଣ୍ଣ ॥
କୃଷ୍ଣ କୃପାରୁ ସିଦ୍ଧ ହୋଇ । ତା କୃପାସିଦ୍ଧା ବୋଲି କହି ॥
ତହିଁର ଅଧିକାରୀ ଶୁଣ । ଯେମନ୍ତ ଗଜରାଜ ଜାଣ ॥
କୁମ୍ଭୀର ଧରନ୍ତେ ବିକଳ । ଧରି କମଳ ତାଳମୂଳ ॥
ଡାକିଲା ଅଦ୍ୟମୂଳ ରଙ୍ଗ । ମୁଁ ହାଦେ ହୋଇଛି ନରେଙ୍ଗ ॥
ସେ ଡାକ ଶୁଣିଲେ କର୍ଣ୍ଣରେ । ଥାଇଣ ଦ୍ୱାରବତୀ ପୁରେ ॥
ତକ୍ଷଣେ ଚକ୍ର ପେଶି କରି । ବେଗେଣ କୁମ୍ଭୀର ସଂହାରି ॥
ଆବର ଦରଶନ ଦେଲେ । କର୍ମ ବନ୍ଧହିଁ ଛିଣ୍ଡାଇଲେ ॥
ସେ କୃପାସିଦ୍ଧା ବୋଲି ଜାଣ । ଏହି ପ୍ରକାରେ ଯେତେ ପୁଣ ॥
ଏମନ୍ତେ ତ୍ରିବ ଯେ ପ୍ରକାର । ଯେ ହାଦେ ଭକ୍ତିଙ୍କ ବତ୍ସର ॥
ସେ ଅଧିକାରୀଙ୍କ ଚରଣ । ସେ ମୋର ଶିରର ଭୂଷଣ ॥
ସେ ମୋର ହୃଦର ପଦକ । ସେ ମୋର ଅଦ-ନବାରକ ॥
ଯେ ଅଧିକାରୀ ନୋହେ ପୁଣ । ତାଙ୍କ ଲକ୍ଷଣ ଏବେ ଶୁଣ ॥
ଶ୍ରୀକୃଷ୍ଣ କଥାରେ ଯାହାର । ଶ୍ରଦ୍ଧା ନ ଥାଇ ମାନସର ॥
ଶୁଣିଲେ ହୁଅଇ ବିମୁଖ । ଏମନ୍ତ ଜାଣ ଯେଉଁ ଲୋକ ॥
ସେ କୋଟି ଯାଗ କଲେ ପୁଣ । ମେରୁ ସମାନ ଦେଲେ ଦାନ ॥
କୋଟିଏ ତୀର୍ଥ ଯଦ କର । ଭକ୍ତିରେ ନୋହେ ଅଧିକାରୀ ॥
ଭକ୍ତିରେ ଶ୍ରଦ୍ଧାଟି ଯୁଗତ । ଶ୍ରଦ୍ଧାରୁ ହୁଏ ଭକ୍ତି ଜାତ ॥
ଯାହାର ଶ୍ରଦ୍ଧା ଜାଣ ନାହିଁ । ଭକତ ଲହର ସେ କାହିଁ ॥
ସେବଣ ଶ୍ରୀକୃଷ୍ଣ ଚରଣ । କହନ୍ତି ଦାସ ଭୀମସେନ ॥

ଇତି ଶ୍ରୀ ହରିଭକ୍ତିଚନ୍ଦ୍ରୋଦୟେ ଭକତେ ଭକ୍ତି ଅଧିକାର ବର୍ଣ୍ଣନେ ନାମ ପଞ୍ଚମୋଽଧ୍ୟାୟଃ ।

## ଷଷ୍ଠ ଅଧ୍ୟାୟ ।

( ଭକ୍ତି ବସ୍ତୁର )

ସୁଜନ ଜନେ ଯେ ଶୁଣିମା । ଯେ ଅଧିକାରିଙ୍କ ମହିମା ॥
ଯେ ଭକ୍ତି ସାଧନ ବସ୍ତୁର । ଭଗବାନଙ୍କୁ ବଶ କର ॥
କର୍ମବନ୍ଧନ ବିନାଶନ୍ତି । ଯେ ସ୍ୱର୍ଗେ ନର୍ତ୍ତ୍ୟକୁ ଚଳନ୍ତି ॥
ପାଇଣ ଗୋଲୋକରେ ବାସ । ଶଠି ରହନ୍ତି କୃଷ୍ଣ ପାଶ ॥
ଯେ ଯେନ ତାଙ୍କର ସମାନ । ତିନ ଭୁବନେ ନାହିଁ ଜାଣ ॥
ଯେ ସାଧୁମାନଙ୍କ ବିସ୍ତର । କାହାର ନାହିଁ ନା ଗୋଚର ॥
ଯେ ଜାଣ ଚତୁର୍ବର୍ଗମାନ । କରନ୍ତି ତୃଣର ସମାନ ॥
ଏକଥା ଅନ୍ୟଥା ନୁହଇ । ଶୁଣିବା ସାବଧାନ ହୋଇ ॥
ଭାବାର୍ଥ ଦୀପିକାର ବାଣୀ । କହୁଅଛନ୍ତି ଯାହା ପୁଣି ॥
ଶ୍ରୀକୃଷ୍ଣ କଥା ଯେ ଅମୃତ । ପୟୋନିଧିରେ ଯାର ଚିତ୍ତ ॥
ବିହାର କର ମହା ମୁଦ । କେବେହେଁ ନ ପାଆନ୍ତି ଖେଦ ॥
ସେମାନେ ଚତୁର୍ବର୍ଗ ପୁଣ । କରନ୍ତି ତୃଣର ସମାନ ॥
ଏ ଯେନ ଭକ୍ତିଙ୍କ ମହିମା । କାହାର ନହଇ ଜାଣିମା ॥
ଯେ ମୁକ୍ତି ନ ଇଚ୍ଛନ୍ତି ଚିତ୍ତେ । ତାଙ୍କୁ କେ ସମାନ ଯୁଗତେ ॥
ସୁଜନେ ସାବଧାନେ ଶୁଣ । ମୁକ୍ତି ବୋଲିଣ ଯେତୁ ପୁଣ ॥
ଯେ ପଞ୍ଚବିଧ ଜାଣ ପୁଣି । ସାଲୋକ୍ୟ ସାରୂପ୍ୟ ଯେ ବେନି
ସାମୀପ୍ୟ ସାଯୁଜ୍ୟ ଯେ ପୁଣ । ସମାନ ଯେନ ପାଞ୍ଚ ଜାଣ ॥
ଏ ଜାଣ ସାମାନ୍ୟ ତ ନୁହେ । କୃଷ୍ଣଙ୍କ କୃପା ଯାକୁ ହୁଏ ॥
ସେ ମୁକ୍ତି ଲଭନ୍ତି ପ୍ରମାଣ । ଅନ ଉପାୟେ ନାହିଁ ଜାଣ ॥
ହରିଙ୍କ କୋଠ ଯେ ଭଣ୍ଡାର । କାହାର ନୋହେ ଅଧିକାର ॥
ଇନ୍ଦ୍ରାଦି ଦେବେ ନିରନ୍ତରେ । ଯେଉଁ ମୁକ୍ତିକି ଇଚ୍ଛା କରେ ॥
ଭକ୍ତେ ତା ଇଚ୍ଛା ନ କରନ୍ତି । ତୃଣର ପ୍ରାୟେକ ଚେତନ୍ତି ॥
ଭକ୍ତି ଭାବରେ ମତି ଧରି । ମୁକ୍ତିକି ଇଚ୍ଛା ଯେ ନ କରି ॥
ଏଥିକୁ ବହୁତ ବଚନ । କହୁଅଛନ୍ତି ଋଷିଗଣ ॥

ତା ମୁହିଁ ଏକ ଏକ କରି । କେତେହେଁ କହିବି ବିସ୍ତରି ॥
କେବଳ ତାଙ୍କ ନାମେ ମନ । ଯେ ଯହିଁ କହିଛନ୍ତି ଜାଣ ॥
ତୃତୀୟ ସ୍କନ୍ଧରେ ଯେ ଜାଣ । ଉଦ୍ଧବ କହିଛନ୍ତି ପୁଣ ॥
ମୋର ମୁକ୍ତିରେ ନାହିଁ କାର୍ଯ୍ୟ । ଭକ୍ତି ବାହାରେ ଦେବରାଜ ॥
ଏହି ତୃତୀୟ ସ୍କନ୍ଧେ ଜାଣ । କପିଳ ଦେବଙ୍କ ବଚନ ॥
ମୋ ପାଦ ସେବା ଅନୁରତ । ଅଟନ୍ତି ଯେବଣ ଭଗତ ॥
ସେ ପଞ୍ଚବିଧ ମୁକ୍ତିମାନ । ଇଚ୍ଛା ନ କରେ ତାହେ ଜାଣ ॥
ଚତୁର୍ଥ ସ୍କନ୍ଧରେଟି ଧ୍ରୁବେ । କହିଅଛନ୍ତି ଏହି ଭାବେ ॥
ସେହି ଚତୁର୍ଥ ସ୍କନ୍ଧେ ପୁଣି । ଅଛି ଆଦି ରାଜାଙ୍କ ବାଣୀ ॥
ପଞ୍ଚମସ୍କନ୍ଧେ ମୁନି ଶୁକ । କହିଅଛନ୍ତି ଏହି ବାକ୍ୟ ॥
ଷଷ୍ଠ ସ୍କନ୍ଧରେ ବୃତ୍ରାସୁର । କହିଅଛନ୍ତି ଏ ଉତ୍ତର ॥
ସେହି ଷଷ୍ଠରେ ତାହେ ପୁଣି । ଅଛି ମହାଦେବଙ୍କ ବାଣୀ ॥
ଇନ୍ଦ୍ରହିଁ କହିଛନ୍ତି ପୁଣ । ସେହି ଷଷ୍ଠରେ ଏ ବଚନ ॥
ସପ୍ତମରେ ପ୍ରହ୍ଲାଦ । କହିଅଛନ୍ତି ଏ ସମ୍ବାଦ ॥
ଏଥିରେ ଇନ୍ଦ୍ରଙ୍କ ବଚନ । ଆହୁରି ଅଛୁଟି ପ୍ରମାଣ ॥
ଅଷ୍ଟମେ ଗଜ ଇନ୍ଦ୍ରଙ୍କର । ଏହି ପ୍ରକାରେ ଟି ଉତ୍ତର ॥
ନବମେ ବଇକୁଣ୍ଠ ନାଥ । କହିଣଅଛନ୍ତି ଯୁଗତ ॥
ଦଶମସ୍କନ୍ଧେ ନାଗପତ୍ନୀ । କହିଅଛନ୍ତି ଏହି ବାଣୀ ॥
ସେହି ଦଶମେ ବେଦମାନ । ସ୍ତୁତିରେ କହିଛନ୍ତି ଜାଣ ॥
ଏକାଦଶରେ ଭାବଗ୍ରାହୀ । ଶ୍ରୀମୁଖେ ଛନ୍ତି ଅଜ୍ଞା ଦେଇ ॥
ଏକାନ୍ତ ଭକ୍ତ ଯେ ଅମ୍ଭର । କାମନା ନ ଥାଇ ତାଙ୍କର ॥
ଅମ୍ଭେ ଯ ଚଣ ଦେଲେ ମୁକ୍ତି । ସେ ଯେ ଦେଲେହେଁ ନ ଘେନନ୍ତି ॥
ଶ୍ରୀମୁଖ ଅଜ୍ଞା ଜାଣ ଏହି । ଆନ କହିବା ପଛେ ଥାଉ ॥
ଦ୍ୱାଦଶ ସ୍କନ୍ଧେ ରୁଦ୍ରଙ୍କର । ଏହି କଥାକୁଟି ଉତ୍ତର ॥
ଏଭାବେ ଏତେକ ବଚନ । ଶ୍ରୀଭାଗବତେ ଛନ୍ତି ଜାଣ ॥

ଅନ୍ୟ ପୁରାଣରେ ଯୁଗତ । ଏକଥା ଅଛଇ ବହୁତ ॥
ଲେଖିଲେ ସବୁର ଉତ୍ତର । ଗୀତ ଯେ ହୋଇବ ବିସ୍ତର ॥
ଏ ଯେତେକର ନ ଲେଖିଲି । ଏକାପ୍ରସଙ୍ଗେ ସିନା ବୋଲି ॥
ଏ ଯେନ ଭକ୍ତଙ୍କ ସମାନ । କେହି ନୁହନ୍ତି ହାଦେ ଜାଣ ॥
ଅନ୍ୟର ଶୁଣିବା ବିଚାର । ଭକ୍ତ ଉପରେ ଅଧିକାର ॥
ଯମର ନୋହେ ହାଦେ ଜାଣ । ଯେ ବିଷ୍ଣୁପୁରାଣ ବଚନ ॥
ଯମର ଦୂତେ ଯେ ପ୍ରଚଣ୍ଡ । ଧରି ଦଉଡ଼ି କୌହି ଦଣ୍ଡ ॥
ଯମ ତାହାଙ୍କୁ ଡାକି କରି । କର୍ଣ୍ଣମୂଳରେ ଭୁନକରି ॥
କହନ୍ତି ଗୁପତ ବାରତ । ଏ କଥା ଜାଣିଥିବ ତତ୍ତ୍ୱ ॥
ଶ୍ରୀମଧୁସୂଦନ ପ୍ରପନ୍ନ । ନ ଯିବ ତାଙ୍କ ସନ୍ନିଧାନ ॥
ତହିଁ ମୋ ପ୍ରଭୁପଣ ନାହିଁ । ପ୍ରଭୁ ତା ଛନ୍ତି ଆଜ୍ଞା ଦେଇ ॥
ନ ଜାଣି ଯେବେ ତୁମ୍ଭେ ଯିବ । ଏ ମୋର ଅପ୍ରାଧ ହୋଇବ ॥
ଏଭାବେ ଶୁଣ ତାଙ୍କ ତହିଁ । ଯମର ଅଧିକାର ନାହିଁ ॥
ଅନ୍ୟର ଶୁଣିବା ସଙ୍ଗତ । ସାଧୁଙ୍କ ସଙ୍ଗ ଯେ ହୁଅନ୍ତି ॥
ତାଙ୍କର ଭବ ନାଶ ଯାଏ । କୃଷ୍ଣ ଚରଣେ ମଣ୍ଡ ହୁଏ ॥
ମୁଚୁକୁନ୍ଦଙ୍କ ସ୍ତୁତି ଠାଇଁ । ଏମନ୍ତ ଅଛନ୍ତି କହି ॥
ଆବର ଭକ୍ତି ସାଧନରେ । ସତ୍ସଙ୍ଗ ମୂଳହିଁ ବୋଲିରେ ॥
ପ୍ରଥମେ ଶ୍ରଦ୍ଧା ଜାତ ହୁଏ । ତହୁଁ ସାଧୁଙ୍କ ସଙ୍ଗ ପାଏ ॥
ତହିଁ ଉତ୍ତାରୁ କୃଷ୍ଣ ଭକ୍ତି । ସାଧନ ଅଙ୍ଗ ଯେ କରନ୍ତି ॥
ଏ ଯେନ ସାଧୁଙ୍କ ସଙ୍ଗତ । ଭକ୍ତିର ମୂଳହିଁ ଯୁଗତ ॥
ଯାହାର ସାଧୁସଙ୍ଗ ନାହିଁ । ଭକ୍ତି ପା'ଇବେ ସେଠି ତାହିଁ ।
କୋଟି ଏ କଳ୍ପେ ନୋହେ ଜାଣ । ଯେ ସାଧୁ ନ ସେବନ୍ତି ପୁଣ ।
ଯା ସାଧୁ ପାଦେ ନାହିଁ ଚିତ୍ତ । ତା ଭକ୍ତି ନୋହେଟି ଯୁଗତ ।
ସାଧୁ ସଙ୍ଗରୁ ହୁଏ ଭକ୍ତି । ଭକ୍ତିରୁ ସମସ୍ତେ ହୁଅନ୍ତି ।
ଜ୍ଞାନ ବୈରାଗ୍ୟ ଯେ ଅଦ୍ଭବେ । ସମସ୍ତେ ହୁଅନ୍ତି ବେହ୍ଲଭେ ।

ଏ ଯେଉଁ ସାଧୁଙ୍କର ସଙ୍ଗ । ସୁଜନ ଜନ କୁଅ ବେଗ ॥
ଏ ହରି-ଭକ୍ତି-ଚନ୍ଦ୍ରୋଦୟେ । ସବୁ ଅଛଇ ସୁଧାମୟେ ॥
ଶ୍ରୀକୃଷ୍ଣ ଭକ୍ତିର ବିଚାର । ପୁରାଣମାନଙ୍କୁ ବାହାର ॥
ଭକ୍ତଙ୍କ ମହିମା ପ୍ରକାଶ । ଷଷ୍ଠ ଯେ ଅଧ୍ୟା ହୁଏ ଶେଷ ॥
ସେ ସାଧୁମାନଙ୍କ ଚରଣ । ଜୀମ ଯେ ପଶିଲା ଶରଣ ॥

ଇତି ଶ୍ରୀ ହରିଭକ୍ତି ଚନ୍ଦ୍ରୋଦୟେ ଭକ୍ତ ମହିମା ବର୍ଣ୍ଣନେ
ନାମ ଷଷ୍ଠୋଽଧ୍ୟାୟଃ ।

---

## ସପ୍ତମ ଅଧ୍ୟାୟ

(ଗୁରୁଶିଷ୍ୟ ଲକ୍ଷଣ ।)

ଏଥୁଉତ୍ତାରୁ ସାଧୁବାଣୀ । ଯେ ଭକ୍ତିଚନ୍ଦ୍ରର କାହାଣୀ ॥
ଗୁରୁ ଶିଷ୍ୟଙ୍କ ଯେ ଲକ୍ଷଣ । ତା ଏବେ ସାବଧାନେ ଶୁଣ ॥
ଯେ ହୋବେ ଗୁରୁଟି ଯୁକତ । ତାଙ୍କର ଲକ୍ଷଣ ଯେମନ୍ତ ॥
ଈଶାନ ସଂହିତାର ବାଣୀ । କହିଅଛନ୍ତି ଯାହା ପୁଣି ॥
ବ୍ରହ୍ମାଣ୍ଡେ ଛନ୍ତି ଯେତେ ବର୍ଣ୍ଣ । ସବୁର ଗୁରୁ ଯେ ବ୍ରାହ୍ମଣ ॥
ଯେ ଷଡ଼ ଅରି ଏବେ ଜିଣି । ନିର୍ମଳ ଅଙ୍ଗ ହୋଦେ ପୁଣି ॥
ଶ୍ରୁତି ସ୍ମୃତିସଙ୍ଗେ ପୁରାଣ । ଏଥିରେ ହୋଇବେ ନିପୁଣ ॥
ସାଧୁମାନଙ୍କରେ ସମ୍ମତ । ଯେ ହୋଇଥିବେଟି ଯୁକତ ॥
ଶ୍ରୀକୃଷ୍ଣ ପାଦର ଭକ୍ତିରେ । ଦୃଢ଼ ଅନୁରାଗ ବେଭାରେ ॥
ଏତେ ଲକ୍ଷଣ ଯାର ଥାଇ । ଉତ୍ତମ ଗୁରୁ ଜାଣ ସେହି ॥
ଆହୁର ପଦ୍ମ ପୁରାଣରେ । ଯା କହିଅଛନ୍ତି ବେଭାରେ ॥
ସମସ୍ତ ବର୍ଣ୍ଣଙ୍କର ପୁଣ । ବିପ୍ରଟି ଗୁରୁ ବୋଲି ଜାଣ ॥
ସବୁର ଅଟନ୍ତି ଯେ ପୂଜ୍ୟ । ଯେମନ୍ତ ହରି ଦେବରାଜ ॥
ଏଥୁଉତ୍ତାରୁ ହୋବେ ଶୁଣ । ଯେ ପୁଣ ଅଗୁରୁ ଲକ୍ଷଣ ॥
ବ୍ରାହ୍ମଣ ହୋଇ ଯେ ଅବ୍ରତ । ନୁହନ୍ତି କୃଷ୍ଣର ଭକତ ॥

ବଡ଼ କୂଳରେ ଜାତ ହୋଇ । ଯାଗରେ ଦୀକ୍ଷିତ ହୁଅଇ ॥
ଷଡ଼ସ୍ତ୍ର ଶାଖା ଅଧ୍ୟୟନ । କରଣ ଥିଲେଂ ହୋଦେ ଜାଣ ॥
ବୈଷ୍ଣବ ନୋହନ୍ତି ସେ ଯେବେ । ଗୁରୁ ନୋହନ୍ତି ଜାଣ ତେବେ ॥
ଆହୁର ଶୁଣିମା ଯୁକତ । ଯା ଭାଗବତେ କହୁଛନ୍ତି ॥
ଦ୍ୱାଦଶ ଗୁଣ-ଯୁକ୍ତ ଥିଲେ । ବିପ୍ର ଯେ ବୈଷ୍ଣବ ନୋହିଲେ
ଗୁରୁ ନୋହନ୍ତି ସେହି ଜାଣ । ଏ କଥା ଅଟଇ ପ୍ରମାଣ ॥
ଏହେନ ଗୁରୁ ଯେ ବଜ୍ୟର । ବିଷ୍ଣୁ ସେବକ ଜାଣ ମୂଳ ॥
ଯେ ଗୁରୁ ବଜ୍ୟର କରିବେ । ବୈଷ୍ଣବ ଲକ୍ଷଣ ଦେଖିବେ ॥
ଭକ୍ତିରେ ଦୃଢ ଯେ ତାଙ୍କର । ତା ପୁଣି କରିବେ ବଜ୍ୟର ॥
ଏ ବେନି କଥା ଜାଣ ମୂଳ । ତାହା ଉତ୍ତାରେ ବିଦ୍ୟାକୁଳ ॥
ଏ ଦୁଇ ଲକ୍ଷଣ ଯେ ଥାଇ । ଭାଗ୍ୟ ଥିଲେ ସେ ଗୁରୁ ପାଇ ॥
ଏ ଭାବେ ଗୁରୁଙ୍କ ଲକ୍ଷଣ । ଏଥିଉତ୍ତାରୁ ଏବେ ଶୁଣ ॥
ଶିଷ୍ୟ ଲକ୍ଷଣ ଯେହୁ ପୁଣି । ଯେ ମନ୍ତ୍ର ମୁକ୍ତାବଳି ବାଣୀ ॥
ପ୍ରଥମେ ଶୁଦ୍ଧ ଲକ୍ଷ୍ମୀବନ୍ତ । ସୁପ୍ରିୟ କାରଣୀ ବିନୀତ ॥
ଦମ୍ଭ ବର୍ଜିତ ସତ୍ୟବାକ୍ୟ । ଧର୍ମ ଅନୁଗତ ବିବେକ ॥
କାମ ଯେ କ୍ରୋଧ ପରିତ୍ୟାଗୀ । ଗୁରୁ ସେବାରେ ଅନୁରାଗୀ ॥
ଏ ଜାଣ ଶିଷ୍ୟର ଲକ୍ଷଣ । ଏଥି ଉତ୍ତାରୁ ଏବେ ଶୁଣ ॥
ଶ୍ରୀ ଗୁରୁ ଚରଣେ ବିଶ୍ୱାସ । ଯେ ଭାବେ କରିବେଟି ଶିଷ୍ୟ ॥
ଏ ଜ୍ଞାନ ଅର୍ଣ୍ଣବର ବାଣୀ । କହୁଅଛନ୍ତି ଯାହା ପୁଣି ॥
ଯେ ଗୁରୁ ଥିବେ ସନ୍ନିଧାନ । ତାଙ୍କୁ ନ ପୂଜି ହୋଦେ ଜାଣ ॥
ଭଗବାନଙ୍କୁ ହିଁ ପୂଜିଲେ । ବିଫଳ ଜାଣିବ ତା' ଭଲେ ॥
ଯେ ଗୁରୁ ସେହି ଭଗବାନ । ଜାଣିବ ଏମନ୍ତ ଭାବେଣ ॥
ଶ୍ରୀଗୁରୁଙ୍କର ହୋଦେ ଆଜ୍ଞା । ଶିଷ୍ୟ ନ କରିବ ଅବଜ୍ଞା ॥
ଯେ ଗୁରୁ ଆଜ୍ଞା ଆନ କରେ । ଆପଣା ବାଣୀ ଯେ ବିସ୍ତରେ ॥
କେବେହେଁ ସିଦ୍ଧ ନୋହେ ଜାଣ । ଶ୍ରୀକୃଷ୍ଣ ଭକ୍ତି ଯେ ପ୍ରମାଣ ॥

ଗୁରୁଙ୍କ ଗମ୍ଭୀର ଯେ ବାଣୀ । ପ୍ରସାଦ କରଇ ଯେହି ଘେନି ॥
ଯେ ଯେ ଭକ୍ତିରେ ଅଧିକାରୀ । ଏମନ୍ତ ଜାଣିବ ବିଚାରି ॥
ତାଙ୍କର ଭକ୍ତି ସିଦ୍ଧ ହୋଇ । ଏଥୁଁ ଶୁଣିବା ମନ ଦେଇ ॥
ଯେ ଜାଣ ଗୁରୁ ଯେ ନ କର । ଇଚ୍ଛାରେ ଭକ୍ତି ଯେ ଆଦର ॥
ଅସାଧୁ ବୋଲି ତାକୁ ଜାଣ । ବିଅର୍ଥ ସବୁ କର୍ମମାନ ॥
ଯେ ଜାଣ ଦୀକ୍ଷାହୀନ ହୋଇ । ମଲେଟି ପଶୁ ଯୋନି ପାଇ ॥
ଏକଥା ଗଉରୀଙ୍କ ଆଗେ । ହର କହିଲେ ଅନୁରାଗେ ॥
ଯାହାର ଉପଦେଶ ନାହିଁ । ସକଳ ଜାଣିଲେଟି ସେହି ॥
ଯେ ଭାଗବତ ନୋହେ ଜାଣ । ଯେସେ ଅଟନ୍ତି ଦୀକ୍ଷାହୀନ ॥
ଗୁରୁଙ୍କ ଅନୁଗ୍ରହ ନାହିଁ । ବୈଷ୍ଣବ ହୋଇବ ସେ କାହିଁ ॥
ଯେସେ ଗୁରୁଙ୍କଠାରୁ ଦୀକ୍ଷା । କରନ୍ତି କୃଷ୍ଣ ନାମ ଶିକ୍ଷା ॥
ବୈଷ୍ଣବ ବୋଲି ତାଙ୍କୁ ଜାଣ । ଯେ ସେବେ ଗୁରୁଙ୍କ ଚରଣ ॥
ଏ ଯେ ଶ୍ରୀକୃଷ୍ଣ ଭକ୍ତି ରସ । ସପ୍ତମ ଅଧ୍ୟା ହୁଏ ଶେଷ ॥
ଯେ ଗୁରୁ ଶିଷ୍ୟଙ୍କ ଲକ୍ଷଣ । ଏହି ଅଧ୍ୟାରେ ହେଲା ଜାଣ ॥
ଶ୍ରୀକୃଷ୍ଣ ଚରଣେ ମାନସ । ଦେଇ କହଇ ଭୀମ ଦାସ ॥

ଇତି ଶ୍ରୀ ହରିଭକ୍ତିଚନ୍ଦ୍ରୋଦୟେ ଭଜନେ ଗୁରୁ ଶିଷ୍ୟ ବିଚାରୋ ନାମ ସପ୍ତମୋଽଧ୍ୟାୟଃ ।

---

## ଅଷ୍ଟମ ଅଧ୍ୟାୟ ।

( ସାଧନ ଭକ୍ତି । )

ସୁଜନେ ସାବଧାନ କର । ଶ୍ରୀକୃଷ୍ଣ ଭକ୍ତିର ବିଚାର ॥
ଶ୍ରୀକୃଷ୍ଣ ଭକ୍ତି ଯେ ଲକ୍ଷଣ । ତହିଁ ହୋଇଛ ସାବଧାନ ॥
କହିଛି ଦ୍ୱିତୀୟ ଅଧ୍ୟାରେ । ପୁରାଣମାନଙ୍କ ବିଚାରେ ॥
ଯେ ଆନ ଅଭିଳାଷ ତେଜି । ଜ୍ଞାନ କର୍ମକୁ ଯେ ନ ଭଜି ॥

କୃଷ୍ଣ ସେବନ୍ତି ଅନୁକୂଳେ । ଭକ୍ତି ଲକ୍ଷଣ ଏ ବୋଲାଇରେ ॥
ଏ ଭକ୍ତି ପ୍ରଥମେ ଅବର । ହୁଏ ଯେ ତିନୋଟି ପ୍ରକାର ॥
ସାଧନ ଭାବ ପ୍ରେମ ହୋଇ । ତିନି ପ୍ରକାରେ ଛନ୍ତି କହି ॥
ଯେ ଭାବ ପ୍ରେମ ଭକ୍ତି ଯେନ । ପଛେ ଶୁଣିମା ତାହା ପୁଣି ॥
ଏବେ ଏ ସାଧନ ଭକ୍ତିର । ଶୃଣ ସାବଧାନ କର ॥
ଇନ୍ଦ୍ରିୟମାନଙ୍କ ସାଧନ । ଶ୍ରୀକୃଷ୍ଣ ଚରଣ ସେବନ ॥
କର୍ଣ୍ଣରେ ମହିମା ଶୁଣିବ । ଚକ୍ଷୁରେ ଦର୍ଶନ କରିବ ॥
ନାସାରେ ଅଘାଣ ପ୍ରସାଦ । ଜିହ୍ୱାରେ ନିର୍ମାଲ୍ୟ ଆସ୍ୱାଦ ॥
ବଚନେ ନାମ ଉଚ୍ଚାରିବ । ବୁକୁରେ ପରଶ ବୈଷ୍ଣବ ॥
ପାଣିରେ ପୂଜା ଯେ ଅବର । ପାଦରେ କ୍ଷେତ୍ରକୁ ଯିବାର ॥
ମନରେ କରିବ ସ୍ମରଣ । ଏ ଭାବେ ଇନ୍ଦ୍ରିୟ ସାଧନ ॥
ଏ ଭାବେ ସେବା ଯେତୁ କରେ । ଶ୍ରୀକୃଷ୍ଣ ଚରଣେ ବୋଲାଇରେ ॥
ତାକୁ ସାଧନ ଭକ୍ତି କହି । ଯେଣୁ ସାଧନୁ ଜାଣ ହୋଇ ॥
ସେ ଯେ ସାଧନ ଅଙ୍ଗମାନ । ଯେତେତେକ ଅଛଇ ପ୍ରମାଣ ।
ସେ ନିତ୍ୟ ହୋଇଣ ଅଛନ୍ତି । କେବଳ ପ୍ରକାଶ ହୁଅନ୍ତି ॥
ସାଧକ ଜନ ଭକ୍ତଠାରେ । ପ୍ରକାଶ ହୋନ୍ତି ସାଧନରେ ॥
ସେ ପୁଣି ସାଧନ ଭକତି । ବେନି ଯେ ପ୍ରକାରେ ହୁଅନ୍ତି ॥
ବଇଧି, ରାଗାନୁଗ ପୁଣ । ବେନି ପ୍ରକାର ହୁଏ ଜାଣ ॥
ଯେ ରାଗାନୁଗ ତା ବୋଲାଇରେ । ଶୁଣିବ ବଇଧ ଉତ୍ତରେ ॥
ଏବେ ଏ ବଇଧ ଭକ୍ତିର । ସୁଜନେ ଶୁଣିବା ଶତ୍ୱର ॥
ଭକ୍ତି ଆରମ୍ଭଠାରୁ ଜାଣ । ଶ୍ରୀକୃଷ୍ଣଠାରେ ହାଦେ ପୁଣ ॥
ସାଧକ ରତି ଜାତ ହୁଏ । ଯେତେତେକ ମଧ୍ୟେ ଏହୁ ହୁଏ ॥
ସାଧକ କରନ୍ତି ସାଧନ । ଶାସ୍ତ୍ର ଆଜ୍ଞାରେ କର ଜାଣ ॥
ବଧି ମାର୍ଗରେ ଛନ୍ତି ହୋଇ । ବଇଧୀ ବୋଲି ତେଣୁ କହି ॥
ଏକଥା ଶ୍ରୀ ଏକାଦଶରେ । ଆଜ୍ଞା ହୋଇଛି ଶ୍ରୀମୁଖରେ ॥

ଯେଉଁ ପୁରୁଷମାନେ ଜାଣ । କରନ୍ତି ଏ ମୋର ଭଜନ ॥
ବେଦମାନଙ୍କର ବଚନରେ । ଅଛଇ ଭକ୍ତି ଯେ ପ୍ରକାରେ ॥
ତନ୍ତ୍ରମାନଙ୍କେ ଅଛି ଜାଣ । ଯେ ଭାବେ ଭକ୍ତିର ସାଧନ ॥
ଏ ଦୁଇ ମତେ ଭକ୍ତି ବିଧି । ଯେ କରେ ଜାଣ ହୋଏ ସିଦ୍ଧି ॥
ଏମନ୍ତ ଛନ୍ତି ଆଜ୍ଞା ଦେଇ । ଆହୁର ଶୁଣ ମନ ଦେଇ ॥
ନାରଦପଞ୍ଚରାତ୍ର ବାଣୀ । ଯା ନାରଦେ କହିଛନ୍ତି ପୁଣି ॥
ଋଷିମାନଙ୍କରେ ବଦତ । ଯେ ଶାସ୍ତ୍ରମାନଙ୍କ ଯୁଗତ ॥
ତହିଁରେ କୃଷ୍ଣଙ୍କୁ ଉଦ୍ଦେଶି । ଯେ କର୍ମ କରଛନ୍ତି ଋଷି ॥
ସେ କର୍ମ ଭକ୍ତି ବୋଲି ଜାଣ । କରିବ ଯେ ଭାବେ ସାଧନ ॥
ଏମନ୍ତ କହିଛନ୍ତି ମୁନି । କେ ଆନ କରିବଟି ପୁଣି ॥
ଆବର ଶ୍ରୀମୁଖର ଆଜ୍ଞା । ତାହା କେ କରିବ ଅବଜ୍ଞା ॥
ଏ ଯେଉଁ ବଇଧ ସାଧନ । ବେଦ ବଚନରେ ହାଦେ ଜାଣ ॥
ଶାସ୍ତ୍ରମାନଙ୍କ ଅନୁସାରେ । ବଇଧ ସାଧନ ବେଭାରେ ॥
ସେ ଯେ ବଇଧୀ ସାଧନର । ଚଉଷଠି ଯେ ଅଙ୍ଗ ତାର ॥
ଯେଉଁ ସାଧନ ଅଙ୍ଗ କରି । ଭବରୁ ଯାଉଛନ୍ତି ତରି ॥
କରିଣ ଭକ୍ତି ଯେ ସାଧନ । ଲଭନ୍ତି ଶ୍ରୀକୃଷ୍ଣଚରଣ ॥
ସେ ଜାଣ ଜୀବନ ମୁକତ । ଯାହାର ସାଧନରେ ରତ ॥
ସେ କୃଷ୍ଣ ଭକ୍ତି ଅଧିକାରୀ । ସାଧନ ଅଙ୍ଗ ଯେହୁ କରି ॥
ସାଧନୁ କରି ଭାବ ଜାତ । ଭାବରୁ ପ୍ରେମଟି ସମ୍ଭୂତ ॥
ଏ ଯେନ କରିବ ସାଧନ । ଭକ୍ତିର ମୂଳ ବୋଲି ଜାଣ ॥
ସାଧନ ବିନୁ ପ୍ରେମ ଯାର । ଭକ୍ତିର ନାହିଁନା ବଚର ॥
ଯାହାର ସାଧନଟି ନାହିଁ । ଭକ୍ତି ଲଭିବ ସେଟି କାହିଁ ॥
ସାଧନ ନ କରନ୍ତି ଯେହୁ । କୃଷ୍ଣଦ୍ରୋହୀ ସେହି ଜାଣ ସେହୁ ॥
ଯାହାର ନାହିଁନା ସାଧନ । ପତିତ ବୋଲି ତାକୁ ଜାଣ ॥

ଏ ଯେନ ସାଧନ ବିସ୍ତର । ସୁଜନ ଜନେ ବେଗେ ଜାଣ ।
ଭକ୍ତି ସାଧନେ କରି ଆଶ । କହିଲା ଶିଶୁ ଭୀମ ଦାସ ।୫୫।

ଇତି ଶ୍ରୀ ହରିଭକ୍ତିଚନ୍ଦ୍ରୋଦୟେ ସାଧନେ ବୈଧଭକ୍ତି
ଲକ୍ଷଣ ବର୍ଣ୍ଣନେ ନାମ ଅଷ୍ଟମୋଽଧ୍ୟାୟ ।

---

## ନବମ ଅଧ୍ୟାୟ ।

( ଚତୁଃଷଷ୍ଟି ଅଙ୍ଗ ସାଧନ )

ସୁଜନେ ହୋଇ ସାବଧାନ । ଏଥୁ ଉତ୍ତାରୁ କଥା ଶୁଣ ।
ବଇଧ ସାଧନ ଭକ୍ତିର । ଚଉଷଠି ଯେ ଅଙ୍ଗ ତାର ।
ତାଙ୍କର ଯେଉଁ ନାମମାନ । ତା ଏବେ ସାବଧାନେ ଶୁଣ ।
ପଦକେ ଅଙ୍ଗେକ ବର୍ଣ୍ଣିବ । ନାମ ଶୁଣିବା ସବୁଙ୍କର ।
ଭକ୍ତି ଆରମ୍ଭେ ଦଶ ଅଙ୍ଗ । ଯେ ପୁଣ ଶୁଣିବା ତା ବେଗ ।
ପ୍ରଥମେ ଶ୍ରୀଗୁରୁଚରଣ । ଆଶ୍ରେ କରିବ ଅଙ୍ଗେ ଜାଣ ।
ଦ୍ୱିତୀୟେ କୃଷ୍ଣ ନାମ ଦୀକ୍ଷା । ଗୁରୁଙ୍କ ମୁଖୁଁ କରି ଶିକ୍ଷା ।
ତୃତୀୟେ କରିଣ ବିଶ୍ୱାସ । ସେବା କରିବ ଗୁରୁ ପାଶ ।
ଚତୁର୍ଥେ ସାଧୁଙ୍କର ମାର୍ଗ । ଅନୁସରଣ ଥିବ ବେଗ ।
ପଞ୍ଚମେ ଭକ୍ତି ଧର୍ମମାନ । ପଚାରି ଜାଣୁଥିବ ପୁଣ ।
ଷଷ୍ଠେ ଭକ୍ତିକି ହେତୁ କରି । ଭୋଗ ଯେତେ ଥିବ ବର୍ଜ୍ଜି ।
ସପ୍ତମେ ଦ୍ୱାରକା ଆଦିରେ । ଯେତେ ରହିବ ସୁବର୍ତ୍ତରେ ।
ଅଷ୍ଟମେ ବ୍ୟବହାରମାନ । ଅଧିକ ନ କରିବ ଜାଣ ।
ନବମ ଅଙ୍ଗ ଏକାଦଶୀ । ବ୍ରତ ଯେ କରିବ ବିଶେଷି ।
ଦଶମେ ଅଁଳା ଅଶ୍ୱତ୍ଥ । ଆଦର କରିବ ଯୁଗତ ।
ଏ ଯେ ଆରମ୍ଭ ଦଶ ଅଙ୍ଗ । ଭକ୍ତି ସାଧନେ ଜାଣ ବେଗ ।
ଏଥୁ ଉତ୍ତାରେ ପୁଣ ଶୁଣ । ବ୍ୟତିରେକରେ ଦଶଗୁଣ ।
ଅସାଧୁମାନଙ୍କର ସଙ୍ଗ । ବେଗେ କରିବ ପରିତ୍ୟାଗ ।

ଶିଷ୍ୟରେ ଅଶାବଦ୍ଧ ପୁଣ । କେବେହେଁ ନ କରିବ ଜାଣ ।
ତୃତୀୟେ ବହୁତ ଯେ ଗ୍ରନ୍ଥ । ଅଭ୍ୟାସ ତ୍ୟଜିବ ଯୁଗତ ।
ଚତୁର୍ଥେ ବ୍ୟାଖ୍ୟା ବାଦମାନ । କେବେହେଁ ନ କରିବ ଜାଣ ।
ପଞ୍ଚେ ଅପ୍ରଣା ବ୍ୟବହାରେ । ଖାଲତା ନୋହିବ ବେଭାରେ ।
ଷଷ୍ଠରେ ଶୋକ କ୍ରୋଧମାନ । ବଶ ନୋହିବ ଏଥି ଜାଣ ।
ସପ୍ତମେ ଆନ ଦେବଙ୍କର । ନିନ୍ଦା କରିବ ବେଗେ ଦୂର ।
ଅଷ୍ଟମେ ଜୀବହିଂସା ଯେତେ । ତା ବେଗେ ତେଜିବ ଯୁଗତେ ।
ନବମେ ସେବା ଯେ ନାମେଣ । ନ ଥିବେ ଅପରାଧମାନ ।
ଦଶମେ କୃଷ୍ଣରେ ଭକ୍ତରେ । ନିନ୍ଦା ନ ସହିବ ବେଭାରେ ।
ବ୍ୟତିରେକରେ ଏହା ଜାଣ । ଏ ଦଶ ଅଙ୍ଗଟି ପ୍ରମାଣ ।
ଏକୋଡ଼ିଏ ଅଙ୍ଗ ଏ ଅଦ୍ୟରେ । କରିବ ଭକ୍ତି ସାଧନରେ ।
ଏଥିରୁ ବୈଷ୍ଣବ ଯେ ଚିହ୍ନ । ଦେହରେ କରିବ ଧାରଣ ।
ଦ୍ୱିତୀୟେ ନାମ ଯେ ଅକ୍ଷର । ଛାପା କରିଣ ଅଙ୍ଗେ ଧର ।
ତୃତୀୟେ ନିର୍ମାଲ୍ୟ ଧାରଣ । ମାଳ ଯେ ଚନ୍ଦନ ବସନ ।
ଏଥିଉତ୍ତାରୁ ଯେ ନବଧା । ସାଧନ ଶୁଣ କରି ଶ୍ରଦ୍ଧା ।
ପ୍ରଥମ ଅଙ୍ଗ ଯେ ଶ୍ରବଣ । ନାମ ଚରିତ ଗୁଣମାନ ।
ଦ୍ୱିତୀୟେ କୀର୍ତ୍ତନ କରିବ । ନାମର ଲୀଳା ଗୁଣ ଭାବ ।
ତୃତୀୟେ କୃଷ୍ଣରୂପ ମାନ । ମାନସେ କରିବ ସ୍ମରଣ ।
ଚତୁର୍ଥେ ଶ୍ରୀମୂର୍ତ୍ତି ପାଦରେ । ସେବା ଯେ କରିବ ବେଭାରେ ।
ପଞ୍ଚମେ ପୂଜା ଯେ କରିବ । ଘେନିଣ ଉପଚାର ଦ୍ରବ୍ୟ ।
ଷଷ୍ଠରେ କର ଦଣ୍ଡବତ । ପ୍ରଭୁଙ୍କୁ ବନ୍ଦିବ ଯୁଗତ ।
ସପ୍ତମେ ଜାଣ ଦାସ୍ୟ ଭାବ । ତାଙ୍କର ଭାବେଣ ସେବିବ ।
ଅଷ୍ଟମେ ସଖା ଭାବ ଜାଣ । ବିଶ୍ୱାସ ଭାବେ କର ପୁଣ ।
ନବମେ ଆତ୍ମା ନିବେଦନ । ଏ ନବ ମୋକ୍ଷ ଯେ ସାଧନ ।
ଏଥୁ ଯେ ଅଙ୍ଗ ମୂଳ କରି । ସାଧନେ ହେଲେ ଯାନ୍ତି ତରି ।

ଏ ଦୁଇ ଗୃହ ଅଙ୍ଗମାନ । ସାଧନ୍ତି ଯେ ତାଙ୍କ ସମାନ ॥
ଏଥୁ ଉତ୍ତାରେ ଅଙ୍ଗ ଶୁଣ । କରିବ କ୍ଷେତ୍ରକୁ ଗମନ ॥
କୃଷ୍ଣଙ୍କୁ ଦର୍ଶନ କରିବ । ଧୂପ ଯେ ଆଳତି ଉତ୍ସବ ॥
କୃଷ୍ଣର ପରିକ୍ରମା ଯେହୁ । ଅଙ୍ଗେଟି ଜାଣ ପୁଣ ସେହୁ ॥
କୃଷ୍ଣର ଚରଣ ସ୍ମରଣ । କରିବ ଯେନ କରଦେଶ ॥
ଆବର ପରିଚର୍ଯ୍ୟାପଣି । ଧରିବ ଗୃହର ଶ୍ରେଣି ॥
ଉତ୍ସବରେ କରିବ ନର୍ତ୍ତନ । ତାଳିକା କରିଣ ବାଦନ ॥
ଧୂପ ଯେ ମାଳ ସଉରଭ । ଆନନ୍ଦେ ଆଘ୍ରାଣ କରିବ ॥
ଲୋଭରେ କରିବ ଆସ୍ୱାଦ । ପାଦଉଦକ ନଇବେଦ୍ୟ ॥
ରଥେ ଆସନ୍ତେ ବାସୁଦେବ । ସମ୍ମୁଖେ ଯାଇଣ ଯିବ ॥
ଯାତ୍ରା ସମୂହମାନଙ୍କରେ । ଥିବ ଶ୍ରୀକୃଷ୍ଣ ପଟ୍ଟଣାରେ ॥
କୃଷ୍ଣର ବୃନ୍ଦେ ମହୋତ୍ସବ । ଯେ ଯଥାଶକ୍ୟଭାବେ ତା କରିବ ॥
କୃଷ୍ଣର ଜନ୍ମଦିନମାନ । ଯାତ୍ରା କରିବ ଦ୍ୱାଦେ ଜାଣ ॥
ଦ୍ୱାଦଶ ଅଙ୍ଗ ଏ ବେଶରେ । ଛନ୍ତି ଶ୍ରୀକୃଷ୍ଣ ଯେଉଁଠାରେ ॥
ନାନାପ୍ରକାରେ ରୂପ ଧରି । ତହିଁ ଯେ କରିବ ବିହାର ॥
ଏଥୁ ଉତ୍ତାରୁ ଏବେ ଶୁଣ । ଯେ କୃଷ୍ଣ ଭକ୍ତିର ସାଧନ ॥
ଶ୍ରୀକୃଷ୍ଣ ମନ୍ତ୍ର ଶୁଦ୍ଧଭାବେ । ବସି ଜପିବ ପୁଣ୍ୟଠାବେ ॥
କୃଷ୍ଣର ରୂପ କରି ଧ୍ୟାନ । ଆବର ଗୁଣ ଲୀଳାମାନ ॥
କୃଷ୍ଣର ସ୍ତବ ସ୍ତୋତ୍ର ଯେତେ । ପଠନ କରିବ ଯୁଗତେ ॥
ଶ୍ରୀକୃଷ୍ଣ ଯଶ ଗୁଣମାନ । ନିରନ୍ତେ କରିବ ଗାୟନ ॥
ବିଜ୍ଞପନ କରିବ ଧୀରେ । ପ୍ରାର୍ଥନା ଲାଳସ ବେଶରେ ॥
କୃଷ୍ଣର କୃପା ହେବ ମୋତେ । ବୋଲି ଆକାଙ୍କ୍ଷା ଥିବ ଚିତ୍ତେ ॥
ଆପଣା ପ୍ରିୟ ଦ୍ରବ୍ୟମାନ । କୃଷ୍ଣେ କରିବ ନିବେଦନ ॥
ଅଖିଳ କର୍ମମାନ ଯେତେ । ତଦର୍ଥେ କରିବ ଯୁଗତେ ॥
ଛାଡ଼ି ସକଳ ଚେଷ୍ଟାମାନ । କୃଷ୍ଣରେ ପଶିବ ଶରଣ ॥

କୃଷ୍ଣର ପ୍ରିୟଙ୍କୁ ସେବିବ । ଆଦରେ ତୁଳସୀ ବୈଷ୍ଣବ ॥
ଆବର କରିବ କାର୍ତ୍ତିକ । ବିଧି ବିସ୍ତୃରେଟି ଯେତେକ ॥
ଶ୍ରୀଭାଗବତଟି ଯତନେ । ଆସ୍ୱାଦ ସାଧୁଙ୍କ ସଙ୍ଗତେ ॥
ନିଜ ଧର୍ମର ବଇଷ୍ଣବ । ସେ ସାଧୁଙ୍କର ସଙ୍ଗ ହେବ ॥
ଆବର କୃଷ୍ଣ ନାମ ମାନ । ନିରତେ କରିବ କୀର୍ତ୍ତନ ॥
ମଥୁରାମଣ୍ଡଳରେ ସ୍ଥିତି । କରିବ ବିସ୍ତରଣ ମତି ॥
ଅଣଷଠି ଏ ଅଙ୍ଗ ଜାଣ । ଏଠାରୁ ହୋଇଲା ସମ୍ପୂର୍ଣ୍ଣ ॥
ଆବର ପାଞ୍ଚ ଯେ ଅଙ୍ଗର । ସୁଜନେ ଶୁଣିବା ବିସ୍ତର ॥
ଏ ଅଣଷଠିଙ୍କ ଭିତରେ । ସେ ପାଞ୍ଚେ ଅଛନ୍ତି ବେଭାରେ ॥
କେବଳ ବିଶେଷ ସାମାନ୍ୟ । ଭାବେ ଅଛନ୍ତି ପୁଣ ଜାଣ ॥
ତହିଁ ଭିତରୁ ଭିନ୍ନ କରି । କହିବି ଶୁଣିବା ବିସ୍ତରି ॥
ଶ୍ରୀମୂର୍ତ୍ତି ଶ୍ରୀନନ୍ଦନନ୍ଦନ । ପାଦେ ସେବିବ ଭାବେ ଜାଣ ॥
ଶ୍ରୀ ଭାଗବତର ମଧରେ । ଦଶମ ଆସ୍ୱାଦ ବେଭାରେ ॥
ବୈଷ୍ଣବ ମଧ୍ୟେ ହୁଏ ସଙ୍ଗ । ଅଶ୍ରୁ ପୁଲକ ଯାର ଅଙ୍ଗ ॥
ଗୀତାଗାୟନ କୃଷ୍ଣ ନାମ । ଯେ ଥିବେ କରଣ ଗାୟନ ॥
ମଥୁରାମଣ୍ଡଳ ମଧରେ । ରହିବ ଶ୍ରୀ ବୃନ୍ଦାବନରେ ॥
ଏ ଭାବେ ମୁଖ୍ୟ ପାଞ୍ଚ ପୁଣ । ବିସ୍ତୃର ଜାଣ ସାଧୁଜନ ॥
ଏରୂପେ ଚଉଷଠି ଅଙ୍ଗ । ଭକ୍ତି ସାଧନ ବିଧି ମାର୍ଗ ॥
ଏଥୁ ଯେ ଅନେକ ସାଧଇ । ଏକାଙ୍ଗ ଭକ୍ତି ତାକୁ କହି ॥
ବହୁତ ଅଙ୍ଗ ଯେ ସାଧନ । ସେ ବହୁଳାଙ୍ଗ ଭକ୍ତି ଜାଣ ॥
ସାଧୁଙ୍କ କାୟ ମାନସରେ । ଇନ୍ଦ୍ରିୟ ଅନ୍ତଃକରଣରେ ॥
ଏ ଅଙ୍ଗମାନଙ୍କ ସାଧନ । ସାଧନ ଭକ୍ତି ଏହି ଜାଣ ॥
ବେଦ ବିସ୍ତୃରେ ଏହୁ ପୁଣି । ପୁରାଣମାନଙ୍କର ବାଣୀ ॥
ତନ୍ତ୍ରମାନଙ୍କର ବଚନ । ଯେତେ ଆବର ଗ୍ରନ୍ଥମାନ ॥
ଏ ଜାଣ ସବୁର ବିସ୍ତରେ । ଆବର ଶ୍ରୀକୃଷ୍ଣ ଆଜ୍ଞାରେ ॥

ଏ ହୋଇଅଛନ୍ତି ଯୁଗତ । ଏ ସେଜନ ଏଥିର ସିଦ୍ଧାନ୍ତ ।
ସକଳ ଗ୍ରନ୍ଥର ବଚନ । ହୋଇ ଅଛନ୍ତି ସାବେ ଜାଣ ।
ତା ପୁଣି ଏକ ଏକ କରି । ସୁଜନେ ଶୁଣିବା ବିସ୍ତରି ।
ଯେଉଁ ଅଙ୍ଗକୁ ଯେଉଁ ବାଣୀ । ଯେଉଁ ଗ୍ରନ୍ଥରେ ଅଛି ପୁଣି ।
ଯେ ଜାଣ ଯେମନ୍ତ ପ୍ରକାରେ । ତା ତ ଲେଖିବା ସେ ବିସ୍ତରେ ।
କୃଷ୍ଣ ଚରଣେ ଦେଇ ଚିତ୍ତ । ଯେ ଭୀମଦାସ ମହାପାତ୍ର ।
ବିସ୍ତରି କରି ମାନସର । କହିଲା ଭକ୍ତିର ବିସ୍ତର ।୧୦୦।

ଇତି ଶ୍ରୀହରିଭକ୍ତିଚନ୍ଦ୍ରୋଦୟେ ବୈଧ ସାଧନ ଚତୁଃଷଷ୍ଠୀ-
ଅଙ୍ଗସଂଖ୍ୟା କଥନେ ନାମ ନବମୋଽଧ୍ୟାୟଃ ।

---

## ଦଶମ ଅଧ୍ୟାୟ ।

( ଚଣ୍ଡ ଅଙ୍ଗ )

ସୁଜନେ ସାବଧାନ କର । ଶ୍ରୀକୃଷ୍ଣ ଭକ୍ତିର ବିସ୍ତର ।
ଯେ ସେ ସାଧନ ଭକ୍ତିଯୋଗ । ବଇଧୀ ଚଉଷଠୀ ଅଙ୍ଗ ।
ତା ଏବେ ଏକ ଏକ କରି । ସୁଜନେ ଶୁଣିବା ବିସ୍ତରି ।
ପ୍ରଥମେ ଶ୍ରୀଗୁରୁ ଚରଣ । ଆଶ୍ରେ କରିବା ଭକ୍ତି ଶୁଣ ।
ଶ୍ରୀ ଭାଗବତ ଏକାଦଶେ । ଯା କହିଛନ୍ତି ମୁନିବ୍ୟାସେ ।
ଶବ୍ଦବ୍ରହ୍ମ ବେଦମାନ । ପରମବ୍ରହ୍ମ ଭଗବାନ ।
ଏ ବେନ ଜାଣ ଯେ ଯୁଗତ । ସେ ଯେ ପରମ ଭାଗବତ ।
ଗୁରୁ ବୋଲିଣ ତାଙ୍କୁ ଜାଣ । ସେବିବ ତାଙ୍କର ଚରଣ ।
ଦୀକ୍ଷା ଗ୍ରହଣ ଭକ୍ତିବାଣୀ । ଯେ ଏକାଦଶରେଛି ପୁଣି ।
ସକଳ ମାୟା କରି ଦୂର । ଧରଣ ଉଦାସ ବେଭାର ।
ଗୁରୁ ସେ ଆତ୍ମା ଦଇବତ । ତାହାଙ୍କ ଠାବରୁ ଯୁଗତ ।
ଯେ ଅତି ଶରଧା ମନେଣ । ଶ୍ରୀ ଭାଗବତ ଧର୍ମମାନ ।
ସହିତେ କୃଷ୍ଣ ନାମ ଦୀକ୍ଷା । ବୁଧମନ୍ତେ କରିବ ଶିକ୍ଷା ।

ବିଶ୍ୱାସୀ ଗୁରୁ ପାଦେ ସେବା । ଅଙ୍ଗର ବିସ୍ତର ଶୁଣିବା ।
ଏହୁ ଏକାଦଶରେ ତାହା । ପ୍ରଭୁଙ୍କ ଆଜ୍ଞା ଅଛି ଯାହା ।
ଗୁରୁ ବୋଲିଣ ପୁଣ ଜାଣ । କେବେହେଁ ନ କରିବ ଭିନ୍ନ ।
ମନୁଷ୍ୟ ବୁଦ୍ଧି ଗୁରୁ ତହିଁ । କେବେହେଁ ବିସ୍ତରିବ ନାହିଁ ।
ଗୁରୁଙ୍କୁ ଜାଣ ସର୍ବ ଦେବ । ଏମନ୍ତେ ବିଶ୍ୱାସେ ଭଜିବ ।
ସାଧୁଙ୍କ ମାର୍ଗ ଅନୁଗତ । ଭକ୍ତିର ଶୁଣିମା ଲକ୍ଷଣ ।
ପଦ୍ମପୁରାଣର ବଚନ । ଯେ ପଥ ଶ୍ରୁତିର କାରଣ ।
ସେ ସର୍ବ ସନ୍ତାପ ବର୍ଜିତ । ସୁଖେ ଗମନ୍ତି ଭାଗବତ ।
ସେହୁ ମାର୍ଗକୁ ଅନୁସର । ଆନ ଯେ ମାର୍ଗ କର ଦୂର ।
ବ୍ରହ୍ମଯାମଳର ଯେ ବାଣୀ । ତାହୁ ଶୁଣିମା ହାଦେ ପୁଣି ।
ଶ୍ରୁତି ସ୍ମୃତି ଏ ପୁରାଣାଦି । ନାରଦପଞ୍ଚରାତ୍ର ବିଧି ।
ଏଥିଅ ଯେ ଭକ୍ତିର ବିସ୍ତର । ସେହୁ ମାର୍ଗକୁ ଅନୁସର ।
ତହୁଁ ଯେ କରିବାକ ଆନ । ଭକ୍ତି ନୋହିବ ନଷ୍ଟେ ଜାଣ ।
ଯେ ହାଦେ ମାର୍ଗ ନ ଜାଣନ୍ତି । ଶ୍ରୀକୃଷ୍ଣ ଭଜନ କରନ୍ତି ।
ଭକ୍ତି ବିରୋଧ କର୍ମମାନ । କରିଲେ ସାଧନ ମଧ୍ୟେଣ ।
ତାଙ୍କର ଭକ୍ତି ହେବ ନାହିଁ । ଯେ ଯେନ ଋଷି ଛନ୍ତି କହି ।
ଭକ୍ତି ମାର୍ଗରେ ଯେ କରିବ । ଅମାର୍ଗେ ଗଲେ ଯେ ନୋହିବ ।
ଯେ ଭାଗବତ ଧର୍ମମାନ । ପୂଜା କରିବା ଅଙ୍ଗ ଶୁଣ ।
ଏ ନାରଦୀୟ ପୁରାଣରେ । ଯାହା କହିଛନ୍ତି ବେଗରେ ।
ଶ୍ରୀକୃଷ୍ଣ ଭକ୍ତି ଯେ ଧର୍ମର । ପୂଜା ନିର୍ବନ୍ଧେ ମତି ଯାର ।
ତାଙ୍କର ସକଳ ବାଞ୍ଛିତ । ସିଦ୍ଧ ସେ ହୁଅନ୍ତି ଯୁଗତ ।
ଭକ୍ତି ହେତୁରେ ହାଦେ ଜାଣ । ଭୋଗ ତେଜିବା ଭକ୍ତି ଶୁଣ ।
ପଦ୍ମପୁରାଣର ଏ ବାଣୀ । କହିଅଛନ୍ତି ଯାହା ପୁଣି ।
ଭକ୍ତିକି ଉଦ୍ଦେଶ କରଣ । ଭୋଗ ତେଜନ୍ତି ଯେଉଁଜନ ।
ବିଷ୍ଣୁଲୋକରେ ସେ ସମ୍ପତ୍ତି । ହୋଇଲେ ବହୁତ ଲଭନ୍ତି ।

ଦ୍ୱାରକା ଆଦରେ ଯେ ପୁଣ । କ୍ଷେତ୍ରେ ରହିବା ଭକ୍ତି ବାଣୀ ॥
ସ୍କନ୍ଦ ପୁରାଣେ ଅଛି ଯାହା । ସାବଧାନରେ ଶୁଣ ତାହା ॥
ସମ୍ବତ୍ସର ଛମାସ ଅବା । ମାସେ ବା ମାସାର୍ଦ୍ଧ ରହିବା ॥
ଦ୍ୱାରକା ରହନ୍ତି ଯେ ଜନ । ସେ ହୋଇ ଚତୁର୍ଭୁଜ ଜାଣ ॥
ପୁରୁଷୋତ୍ତମେ ଏହିମତ । ବ୍ରହ୍ମପୁରାଣେ କହୁଛନ୍ତି ॥
ପୁରୁଷୋତ୍ତମ କ୍ଷେତ୍ରେ ଜାଣ । ସମସ୍ତ ଦଶ ଯେ ଯୋଜନ ॥
ତହିଁ ଯେ ବାସ କରୁଥାଏ । ଦିଶନ୍ତି ଚତୁର୍ଭୁଜମୟେ ॥
ଆବ୍ରହ୍ମ ଅନ୍ତ ଯେ ଚଣ୍ଡାଳ । ସବୁରି ଜାଣ ଗୃହ କର ॥
ଦିଶନ୍ତି ମହା ତେଜୋମୟେ । ସ୍ୱର୍ଗେ ଦେଖନ୍ତି ଦେବତାଏ ॥
ଯେ ନିଜ ବ୍ୟବହାରମାନ । ଅଧିକ ଉଣା ବିଧି ଗୁଣ ॥
ନାରଦୀୟ ପୁରାଣେ ଏହା । କହୁଅଛନ୍ତି ହୋଇ ଯାହା ॥
ଯାର ଯେତେକ ବ୍ୟବହାର । କହିବ ତେତିକି ମାତର ॥
ଅଧିକ ଉଣା ଯେବେ ହୋଇ । ତା ପରମାର୍ଥ ନାଶ ଯାଇ ॥
ଆଉର ବ୍ରତ ଏକାଦଶୀ । ଭକ୍ତିରେ ଶୁଣିବା ବିଶେଷି ॥
ଏହା ଯେ ବ୍ରହ୍ମ-ବୈବର୍ତ୍ତେ । କହିଣ ଅଛନ୍ତି ଯୁଗତେ ॥
ସକଳ ପାପ ଯେ ନାଶନ । ଅତ୍ୟନ୍ତ ପୁଣ୍ୟ ହୋଇ ଜାଣ ॥
ଏକାଦଶୀ ଯେ ଉପବାସ । ବ୍ରତରେ ନାହିଁଟି ସଦୃଶ ॥
ଅଁଳା ଅଶ୍ୱତ୍ଥ ଆଦରେ । ଆଉର ଶୁଣ ସୁବସ୍ତରେ ॥
ଯେ ଅଛି ସ୍କନ୍ଦ ସେ ପୁରାଣେ । ସୁଜନେ ଶୁଣ ସାବଧାନେ ॥
ତୁଳସୀ ଅଁଳା ପିପ୍ପଳ । ବୈଷ୍ଣବ ଗୋରୁ ଭୂମି ସୁର ॥
ଏହାଙ୍କୁ ପୂଜା ଯେ ପ୍ରମାଣ । ଧ୍ୟାନରେ ନାଶେ ପାପମାନ ॥
ଏ ଯେ ଆରମ୍ଭ ଦଶ ଅଙ୍ଗ । ଭକ୍ତି ଆରମ୍ଭେ ଜାଣ ଥାଗ ॥
ପୁରାଣମାନଙ୍କର ବୋଲ । ଏଥିର ସିଦ୍ଧାନ୍ତ ଶୁଣିଲ ॥
ସୁଜନେ ବେଦଗଣ ବସ୍ତୁର । ଭକ୍ତି ଶରଧା ଯେବେ କର ॥
ଯାର ଆରମ୍ଭ ଅଙ୍ଗ ନାହିଁ । ଭକ୍ତି ସାଧନ ତାର କାହିଁ ॥

ଆରମ୍ଭ ଉତ୍ତାରୁ ସାଧନ । ସୁଜନେ କର ସାବଧାନ ॥
କୃଷ୍ଣଚରଣେ ଦେଇ ମତ । ଦୀନ କହଇ ହରିଭକ୍ତି ।୬୫।

ଇତି ଶ୍ରୀହରିଭକ୍ତିଚନ୍ଦ୍ରୋଦୟେ ବୈଧୀ ସାଧନ ଆରମ୍ଭ ରୂପ ଦଶ ଅଙ୍ଗ କଥନେ ନାମ ଦଶମୋଽଧ୍ୟାୟ ।

---

## ଏକାଦଶ ଅଧ୍ୟାୟ ।

( ବ୍ୟତିରେକ ଦଶ ଅଙ୍ଗ )

ସୁଜନେ ସାବଧାନେ ଶୁଣ । ଶ୍ରୀକୃଷ୍ଣ ଭକ୍ତିର ବଧାନ ॥
ବ୍ୟତିରେକରେ ଦଶ ଅଙ୍ଗ । ଯେ ଅଛୁ ଶୁଣ ତହିଁ ମାର୍ଗ ॥
ଅସାଧୁମାନଙ୍କ ସଙ୍ଗର । ତ୍ୟାଗ କରିବାର ବଚିର ॥
କାତ୍ୟାୟନ ସଂହିତା ବାଣୀ । କହିଅଛନ୍ତି ଯାହା ପୁଣି ॥
ଅଗ୍ନିରେ ଦହିଯିବା ଦେବାର । ତାହା ଜାଣିବ ବଡ଼ ଭଲ ॥
ସଜ୍ଜନ ଚନ୍ତାରେ ବମୁଣ । ନ ଯିବ ସେ ଜନଙ୍କ ପାଶ ॥
ବଷ୍ଣୁ ରହସ୍ୟ ଗ୍ରନ୍ଥବାଣୀ । ତାହା ନ ଶୁଣେ ଯେହୁ ପୁଣି ॥
ବ୍ୟାଘ୍ର କୁମ୍ଭୀର ସର୍ପଙ୍କର । ସଙ୍ଗ ଉତ୍ତମଟି ବଚ଼ର ॥
ନାନା ଦେବତା ସେବା କରେ । ସେ ସଙ୍ଗ ତେଜିବ ବେଗରେ ॥
ଶସ୍ୟମାନଙ୍କ ଅନୁବନ୍ଧ । ଗ୍ରନ୍ଥ ଅଭ୍ୟାସ ବ୍ୟାଖ୍ୟାବାଦ ॥
ଏ ତନ ତେଜିବାର ପାଇଁ । ସପ୍ତମ ସ୍କନ୍ଧେ ଛନ୍ତି କହି ॥
ଭକ୍ତି ବରୋଧି ଏହୁ ଜାଣ । ଏ ଯେବେ ତେଜିବ ବହନ ॥
ଆପଣା ବ୍ୟବହାରେ ପୁଣି । ଦୀନତା ନୋହିବାର ବାଣୀ ॥
ପଦ୍ମପୁରାଣେ ଛନ୍ତି କହି । ଆପଣା ବ୍ୟବହାରେ ଯେହି ॥
ଯେ ନଜ ଭକ୍ଷ, ଯେ ବସନ । ମିଳବ ନ ମିଳବ ପୁଣ ॥
ତହିଁକ ଚନ୍ତା ନ କରିବ । ଦୀନତା ତାହାକୁ ନୋହିବ ॥
ବକଳ ବୁଦ୍ଧି ନ ଧରଣ । କୃଷ୍ଣଙ୍କୁ କରିବ ଭଜନ ॥
ଶୋକ ଆବର କ୍ରୋଧାଦରେ । ବଶ ଯେ ନୋହିବ ବେଗରେ ॥

ଏହୁ ପଦ୍ମପୁରାଣ ବାଣୀ । ସୁଜନେ ଶୁଣ ପରମାଣି ।
ଶୋକ ଯେ କ୍ରୋଧ ତମ ରସ । ଏଥିରେ ବଶ ଯା ମାନସ ।
ମୁକୁନ୍ଦ ସ୍ମୃତି ସମ୍ଭାବନା । ସେମାନ ନୁହଇ ଘଟଣା ।
ଆନ ଦେବଙ୍କ ନିନ୍ଦାମାନ । ନ କରିବାର ବିଧି ଶୁଣ ।
ତା ଏହୁ ପଦ୍ମ ପୁରାଣରେ । କହି ଅଛନ୍ତି ସୁବକ୍ତ୍ରେ ।
ସକଳ ଦେବଙ୍କ ଈଶ୍ୱର । ଅଟନ୍ତି ପ୍ରଭୁ ଚକ୍ରଧର ।
ତାହାଙ୍କୁ ଆରାଧନା କର । କାହାର ନିନ୍ଦା ଯେ ନ କର ॥
ବ୍ରହ୍ମା ରୁଦ୍ରାଦି ଦେବମାନ । ନିନ୍ଦା ଯେ ନ କରିବ ପୁଣ ।
ଜୀବଙ୍କ ହିଂସା ଉପଦେଶ । ତେଜିବାର ଶୁଣିବା ମାର୍ଗ ।
ଯେ ଅଛି ଶ୍ରୀ ମହାଭାରତେ । ଶାନ୍ତି ପର୍ବରେ ସେ ଯୁଗତେ ।
ତାହାର ତଳ ଶ୍ଳଠାରେ । ଯେମନ୍ତ କରୁଣା ବେଭାରେ ।
ସେହିପ୍ରକାରେ ଜୀବଠାଇଁ । ଯେ ଜାଣ କରୁଣା କରଇ ।
ତାହାଙ୍କୁ ପ୍ରଭୁ ଯେ ଶ୍ରୀପତି । ବେଗେଣ ପ୍ରସନ୍ନ ହୁଅନ୍ତି ।
ଜୀବେ ନିଷ୍ଠୁର ବୁଦ୍ଧି ଯାର । ଭକ୍ତି କେବେହେଁ ନୁହେ ତାର ।
କୋଟିଏ କଳ୍ପରେ ନୁହଇ । ଯାହାର ଜୀବେ ଦୟା ନାହିଁ ।
ଜୀବେ ନିରାଶ ବୁଦ୍ଧି ଯାର । ରାକ୍ଷସ ପ୍ରକୃତି ସେ ନର ।
ତାମସ ଗୁଣେ ଜୀବ ନାଶ । କରନ୍ତି ହୋଇଣ ହରଷ ।
ସେ ନରେ ଶ୍ରୀକୃଷ୍ଣର ଭକ୍ତି । କେମନ୍ତେ ହେବ ଉତପତ୍ତି ।
ସେବା ନାମରେ ଅପରାଧ । ତେଜିବା ଶୁଣିବା ସମ୍ବାଦ ।
ବରାହ ପୁରାଣ ବଚନ । ଯା କହିଛନ୍ତି ଭଗବାନ ।
ଯେ ମୋ ସେବାରେ ଅପରାଧୀ । ହୁଅନ୍ତି ନୋହି ସଦବୁଦ୍ଧି ।
ତାହାଙ୍କୁ ବଇଷ୍ଣବ ଜାଣ । ବେଗେ ତେଜିବ ହାଦେ ପୁଣ ।
ନାମର ଅପରାଧୀ ବାଣୀ । ପଦ୍ମପୁରାଣରେ ଯେ ପୁଣି ।
ସମସ୍ତ ଅପରାଧ ପୁଣ । ନାମ ଭଜିଲେ ଯାନ୍ତି ଜାଣ ॥
ନାମରେ ଅପରାଧ ଭଲେ । ତା ପାର ନାହିଁନା କହିଲେ ।

ସେ ଜାଣ ନରକେ ପଡ଼ନ୍ତି । ଏମନ୍ତ ବୋଲି କହନ୍ତି ।
ଭକ୍ତ ଶ୍ରୀକୃଷ୍ଣଙ୍କ ଆବର । ନିନ୍ଦା ନ ସହିବା ବେଭାର ।
ଶ୍ରୀଭାଗବତ ଦଶମରେ । ଯା କହି ଅଛନ୍ତି ବଗ୍ଧରେ ।
ଯେ ନିନ୍ଦା କରିବ ପ୍ରଭୁଙ୍କୁ । ଆବର ବୈଷ୍ଣବମାନଙ୍କୁ ।
ତାହା କେବେହେଁ ନ ସହିବ । ସେ ସ୍ଥଳ ଛାଡ଼ି ବେଗେ ଯିବ ।
ଯେ ଜାଣି ସେଠାରୁ ନ ଯାନ୍ତି । ସକଳ ଧର୍ମ ନାଶ ହୋନ୍ତି ।
ନରକେ ପଡ଼ନ୍ତି ସେ ପୁଣ । ନଷ୍ଟେ କାରଣ ଏହା ଜାଣ ।
ଏ ଯେ ଅଟଇ ଦଶ ଅଙ୍ଗ । ବ୍ୟତିରେକରେ ଜାଣ ଆଗ ।
ଯେ ଭକ୍ତି ସାଧନ କରିବେ । ଏ ଦଶ ଅଙ୍ଗ ଆଚରିବେ ।
ନୋହିଲେ ନୁହେ ଭକ୍ତି ଜାଣ । କହିଅଛନ୍ତି ସାଧୁଜନ ।
ଶ୍ରୀକୃଷ୍ଣ ଚରଣ ସାରସ । ନିରତେ ଚିନ୍ତଣ ମାନସ ।
କହିଲା ଦାସ ଭୀମସେନ । ଶ୍ରୀକୃଷ୍ଣ ଭକ୍ତିର ସାଧନ । ୬୫ ।

ଇତି ଶ୍ରୀ ହରିଭକ୍ତିଚନ୍ଦ୍ରୋଦୟେ ବୈଧୀସାଧନେ ବ୍ୟତିରେକ ଦଶ ଅଙ୍ଗ କଥନେ ନାମ ଏକାଦଶୋଽଧ୍ୟାୟଃ ।

---

## ୧୨ଶ ଅଧ୍ୟାୟ ।

(ମୁଖ୍ୟନବକଥା)

ସୁଜନେ ଶୁଣ ହରି କଥା । ଭକ୍ତିର ସାଧନ ବ୍ୟବସ୍ଥା ।
ବୈଷ୍ଣବ ଚିହ୍ନ ଯେ ଧାରଣ । ଯେ ବ୍ରହ୍ମପୁରାଣ ବଚନ ।
ଯେ କଣ୍ଠତଟରେ ତୁଳସୀ । ମାଳାଧରନ୍ତି ଅହର୍ନିଶି ।
ପଦ୍ମପୁଷ୍କର ମାଳମାନ । ଆବର କଣ୍ଠେ ଯାର ଜାଣ ।
ଊର୍ଦ୍ଧ୍ୱପୁଣ୍ଡ୍ରକ ଲଲାଟରେ । ଶଙ୍ଖ ଚକ୍ରାଙ୍କ ବାହୁମୂଳେ ।
ଏ ଜାଣ ବଇଷ୍ଣବ ଚିହ୍ନ । ଏହା ଜାଣନ୍ତି ଯେଉଁ ଜନ ।
ସେ ଜାଣ ବୈଷ୍ଣବ ବୋଲନ୍ତି । ଏ ମହୀ ପବିତ୍ର କରନ୍ତି ।
ନାମରେ ଅକ୍ଷର ଧାରଣ । କରିବା ବାଣୀ ଏବେ ଶୁଣ ।

ସ୍କନ୍ଦପୁରାଣେ ଛନ୍ତି କହି । କୃଷ୍ଣ ନାମ ଅକ୍ଷର ଯେହି ॥
ଛାପ ଲେଖନ କରୁଥିବେ । ଭକତ ଅଙ୍ଗରେ ଧରିବେ ॥
ତାହାଙ୍କୁ ଦେଖି ଯମଦୂତ । ଦୂରନ୍ତୁ ପଳାନ୍ତି ଯୁଗତ ॥
ଏବେ ଯେ ନିର୍ମାଲ୍ୟ ଧାରଣ । ମହିମା ଶୁଣ ସାଧୁଜନ ॥
ଯେ ଅଛି ସ୍କନ୍ଦପୁରାଣରେ । ଥିବାରୁ ଶ୍ରୀ ଏକାଦଶରେ ॥
ପ୍ରଭୁଙ୍କ ଉପଭୋଗମାନ । ମାଳ ଅଳଙ୍କାର ବସନ ॥
ଚନ୍ଦନ ଗନ୍ଧ ଆଦି କରି । ଯେ ନିଜ ଅଙ୍ଗେ ଥାନ୍ତି ଧରି ॥
ତାଙ୍କର ନାହିଁ ରୋଗ ଲେଶ । ସକଳ ପାପ ଯାନ୍ତି ନାଶ ॥
ପବିତ୍ର ହୁଏ ତାଙ୍କ ଅଙ୍ଗ । ମାୟାରୁ ତରନ୍ତି ସେ ବେଗ ॥
ଏ ତିନି ଅଙ୍ଗ ଯେ ଧାରଣ । ଭକ୍ତି ସାଧନେ ଅଗ୍ର ଜାଣ ॥
ଏଥି ଶୁଣିବା ମନ ଦେଇ । ମୁଖ୍ୟ ନବଧା ଯାହା କହି ॥
ପ୍ରଥମେ ସାଧନ ଶ୍ରବଣ । ନାମ ଚରିତ ଗୁଣମାନ ॥
ଶୁଣିବା ଶ୍ରବଣ ବିଚାର । ଯାହା ଶୁଣିବା ଶ୍ରବଣର ॥
ତାହା ଯେ ଶୁଣି ନ ଛାଡ଼ିବ । ଚିତ୍ତରେ ଭାବନା କରିବ ॥
ଯେ ନାମ ଶ୍ରବଣ ମହିମା । ଗରୁଡ଼ପୁରାଣେ ଶୁଣିମା ॥
ସଂସାର ସର୍ପରେ ଦଂଶନ । ନଷ୍ଟ ଚେଷ୍ଟିତ ଯେଉଁଜନ ॥
କୃଷ୍ଣ ବୋଲିଣ ମନ୍ତ୍ରସାର । ଶୁଣି ତରିବେ ସେହି ନର ॥
ଚରିତ ଶ୍ରବଣର ବାଣୀ । ଚତୁର୍ଥସ୍କନ୍ଧେ ଯାହା ଶୁଣି ॥
ସାଧୁଙ୍କ ମୁଖରୁ ଯୁଗତ । ମଧୁସୂଦନଙ୍କ ଚରିତ ॥
ଯେ ଯେ ପୀୟୂଷ ସିନ୍ଧୁବାର । ତା କର୍ଣ୍ଣେ ପାନ ଯେହୁ କରି ॥
ତାଙ୍କର ଭୟ ଶୋକମାନ । କ୍ଷୁଧା ଯେ ତୃଷା ସହିତେଣ ॥
ତାହାଙ୍କୁ କେହି ନ ବାଧନ୍ତି । ସେ କୃଷ୍ଣ ଚରଣ ଲଭନ୍ତି ॥
ଶ୍ରବଣେ ଗୁଣ କଥା ଶୁଣ । ଦ୍ୱାଦଶସ୍କନ୍ଧେ ଯେହୁ ପୁଣ ॥
ଯେ କୃଷ୍ଣ ଗୁଣ ନିରନ୍ତରେ । ଶ୍ରବଣ କରନ୍ତି ଶ୍ରଦ୍ଧାରେ ॥
ତାଙ୍କର ନିର୍ମଳ ଯେ ଭକ୍ତି । ଶ୍ରୀକୃଷ୍ଣ ଚରଣ ଲଭନ୍ତି ॥

ଯାହା କହେଣ ପରୀକ୍ଷିତ । କୃଷ୍ଣଙ୍କୁ ଲଭିଲେ ଯୁଗତ ॥
ଏବେ କୀର୍ତ୍ତନ ବିଧି ଶୁଣ । ନାମ ଯେ ଲୀଳା ଆଉ ଗୁଣ ॥
ନାମ ତ କୀର୍ତ୍ତନ କେଭାରେ । ଯେ ଛନ୍ତି ବିଷ୍ଣୁ ଧର୍ମୋତ୍ତରେ ॥
କୃଷ୍ଣ ଇତି ମଙ୍ଗଳ ନାମ । ଯାର ବଦନୁ ଜାତ ପୁଣ ॥
ତା ମହାପାତକ କୋଟିଏ । ଭସ୍ମ ସେ ହୁଅନ୍ତି ନିଶ୍ଚୟେ ॥
ଲୀଳା କୀର୍ତ୍ତନର ସିଦ୍ଧାନ୍ତ । ଯେ ସପତମ ଭାଗବତ ॥
ଯେ ଯେ ଶ୍ରୀକୃଷ୍ଣ ଲୀଳାମାନ । କରନ୍ତି ମୁଖରେ ଗାୟନ ॥
ତାହା ଯେଉଁଜନେ ଶୁଣନ୍ତି । ଶ୍ରୀକୃଷ୍ଣ ଚରଣ ଲଭନ୍ତି ॥
ଗୁଣ କୀର୍ତ୍ତନର ବିଧାନ । ପ୍ରଥମସ୍କନ୍ଧେ ଅଛି ଶୁଣ ॥
କବିମାନଙ୍କେ ନିରୂପିତ । ଶ୍ରୀକୃଷ୍ଣ ଗୁଣରେ ଯୁଗତ ॥
ତା ଯେହୁ କରନ୍ତି କୀର୍ତ୍ତନ । ଲଭନ୍ତି ଭକ୍ତି ନିଷ୍ଠେ ଜାଣ ॥
ଏ ଭାବେ କୀର୍ତ୍ତନ ଯେ ଭକ୍ତି । କହି ତହିଲେ ଶୁକଯତି ॥
ସ୍ମରଣ ଭକ୍ତି ଏ ସାଧନ । ସୁଜନ ସାବଧାନେ ଶୁଣ ॥
ମନର ସମ୍ବନ୍ଧ ଅଟନ୍ତି । ଯେଣୁ ମାନସେ ସ୍ମରନ୍ତି ॥
ତା ଏବେ ଶୁଣ ମନଦେଇ । ବିଷ୍ଣୁପୁରାଣେ ଛନ୍ତି କହି ॥
ସେ ସବୁ କଲ୍ୟାଣର ସ୍ଥାନ । ଯେ କରେ କୃଷ୍ଣ ସୁମରଣ ॥
ଆହୁରି ପଦ୍ମ ଯେ ପୁରାଣେ । ଯେ ଅଛି ଶୁଣ ସାବଧାନେ ॥
ଗମନେ ଅଗମନେ ଜାଣ । ଯେ କରେ କୃଷ୍ଣ ସ୍ମରଣ ॥
ସେ ଜାଣ ପାପ ଯେ ସମୂହ । ନାଶନ୍ତି ନାହିଁ ନା ସନ୍ଦେହ ॥
ଯେଉଁ ଭକ୍ତିକି ଜାଣିକର୍ । ହିରଣ୍ୟସୁତ ଗଲେ ତର୍ ॥
ଶ୍ରୀମୂର୍ତ୍ତିମାନଙ୍କର ପାଦ । ସେବାର ଶୁଣିବା ସମ୍ବାଦ ॥
ଏ ଆଦି ପୁରାଣର ବାଣୀ । ପ୍ରଭୁ ଯା କହିଛନ୍ତି ପୁଣି ॥
ଯେ ମୋର ପାଦ ସେବା କରେ । ଭକ୍ତି ମୁଁ ଦିଅଇ ତାହାରେ ॥
ତାଙ୍କୁ ମୁଁ ନ ଦିଅଇଁ ମୁକ୍ତି । କମଳା କରେ ଯେଉଁ ଭକ୍ତି ॥
ଶ୍ରୀକୃଷ୍ଣ ପୂଜା ଯେ ପ୍ରକାର । ସୁଜନେ ଶୁଣିବା ବିଚାର ॥

ଯେ ଭୂତଶୁଦ୍ଧି ମାତୃକାଦି । ଅମ୍ବର ନ୍ୟାସ ଶୁଦ୍ଧ ବଧି ॥
ଯେ ଉପଚାର ଦ୍ରବ୍ୟମାନ । ତହିଁରେ କୃଷ୍ଣ ପୂଜା ଜାଣ ॥
ଦଶମସ୍କନ୍ଧେ ଛନ୍ତି କହି । ସ୍ୱର୍ଗ ଯେ ଅପବର୍ଗ ଯେହି ॥
ବିବିଧ ଭୋଗ ତହିଁ ଜାଣ । କୃଷ୍ଣପୂଜାରୁ ହୁଏ ପୁଣ ॥
ବିଷ୍ଣୁରହସ୍ୟେ କହିଛନ୍ତି । ଯେ ଜନ କୃଷ୍ଣଙ୍କୁ ପୂଜନ୍ତି ॥
ପରମାନନ୍ଦ ସୁଖାସ୍ପଦ । ଲଭନ୍ତି କୃଷ୍ଣ ପଦ୍ମପାଦ ॥
ଯା କରି ପୃଥୁ ନୃପବର । ଲଭିଲେ କୃଷ୍ଣର ପସୃର ॥
କୃଷ୍ଣଙ୍କୁ ପ୍ରଣାମ ଭକତି । କରିବା ଶୁଣିବା ଯୁକତି ॥
ଏ ନାରଦୀୟ ପୁରାଣରେ । ଯା କହିଛନ୍ତି ସୁବିସ୍ତରେ ॥
କୃଷ୍ଣଙ୍କୁ ଏକଇ ପ୍ରଣାମ । ଦଶ ଅଶ୍ୱମେଧର ସମ ॥
ଦଶ ଅଶ୍ୱମେଧରେ ପୁଣି । ଲେଉଟି ଜନ୍ମନ୍ତି ଅବନୀ ॥
କୃଷ୍ଣ ପ୍ରଣାମି ନୁହେ ଜାତ । ଭକ୍ତି ସେ ଲଭନ୍ତି ଯୁକତ ॥
ଅକ୍ରୂର କରି ଯେଉଁ ଭକ୍ତି । ଲଭିଲେ କୃଷ୍ଣ ପାଦଗତି ॥
କୃଷ୍ଣଙ୍କୁ ଦାସ ଯେ ବେଭାରେ । ସେବିବା ଶୁଣିବା ବେଭାରେ ॥
ଯେ ନିଜ କର୍ମ ତା ଅର୍ପଣ । ଥିବର କିଙ୍କର ଭାବେଣ ॥
ଏ ବେନି ମତେ ଦାସ ହୋଇ । ସ୍କନ୍ଦ ପୁରାଣେ ଛନ୍ତି କହି ॥
କୃଷ୍ଣରେ କର୍ମ ସମର୍ପନ୍ତି । ସେ ଭାଗବତ ଧର୍ମ ପାନ୍ତି ॥
ନାରଦପୁରାଣର ବାଣୀ । ଅଛି ଶୁଣିବା ତାହା ପୁଣି ॥
ସକଳ ଚେଷ୍ଟା ଯେ ଦାସ୍ୟରେ । ମନ ବଚନ କର୍ତ୍ତବ୍ୟରେ ॥
ସେବନ୍ତି କିଙ୍କର ଭାବେଣ । ଜୀବନମୁକ୍ତ ତାଙ୍କୁ ଜାଣ ॥
ଯେ ଭକ୍ତି କରଣ ମାରୁଖ । ଲଭିଲେ କୃଷ୍ଣ ପାଦଗତି ॥
ସଖା ଭକ୍ତିର ଏବେ ବିଧି । ସାବଧାନରେ ଶୁଣ ସୁଧୀ ॥
ବିଶ୍ୱାସ ମାନି ବିଧି ଜାଣ । ବେନିପ୍ରକାରେ ସଖା ଗୁଣ ॥
ବିଶ୍ୱାସ ଶ୍ରୀ ମହାଭାରତ । ଯାହା କହିଛନ୍ତି ଯୁକତ ॥
କୃଷ୍ଣ ଯେ ଭକତତାରଣ । ଏବାଳ ଯା ଶୁଣୁଅଛ ପୁଣ ॥

ସେହି ବିଶ୍ୱାସ ଧରି ଚିତ୍ତେ । ଭକ୍ତି ଯେ କରନ୍ତି ଯୁଗତେ ॥
ବିଶ୍ୱାସ ସଙ୍ଗା ଭାବ ସେହି । ଏଥୁ ଶୁଣିବା ମନଦେଇ ॥
ମିତ୍ର ଯେ ବୃତ୍ତି ସଙ୍ଗା ପୁଣି । ଶ୍ରୀ ଏକାଦଶର ଏ ବାଣୀ ॥
କୃଷ୍ଣର ତହିଁ ମିତ୍ର ଭାବ । ନିଜ ମନରେ ତ କରିବ ॥
ମୋହର ବନ୍ଧୁ ଭଗବାନ । ସେ ବିନୁ ନ ଜାଣିବ ଆନ ॥
ଏମନ୍ତ ବିଗ୍ରହ ଯାହାର । ସଙ୍ଗା ଭାବଟି ତାହାଙ୍କର ॥
ଯାହା ସେ କହିଣ ଅର୍ଜୁନ । ଲଭିଲେ ଶ୍ରୀକୃଷ୍ଣ ଚରଣ ॥
ଯେ ଆତ୍ମା ନିବେଦନ ଭକ୍ତି । ଶୁଣିବା ତହିଁର ଯୁକତି ॥
ଭକ୍ତି ବିବେକ ଗ୍ରନ୍ଥ ପୁଣ । ଯା କହିଅଛନ୍ତି ପ୍ରମାଣ ॥
ଯେ ନିଜ ଦ୍ରବ୍ୟର ସହିତେ । ସକଳ କର୍ମହିଁ ଯୁଗତେ ॥
ନିଜ ଶରୀର ସହିତେଣ । କୃଷ୍ଣେ କରିବ ନିବେଦନ ॥
ସେହି ଠାବରୁ ତାଙ୍କ ରକ୍ଷା । ମନରେ ନ କରିବ ବାଞ୍ଛା ॥
ଆପଣା ଭଲ ମନ୍ଦ ମାନ । କେବେହେଁ ନ କରିବ ମନ ॥
ସେ ସବୁ ଜାଣିବ କୃଷ୍ଣର । ତାହିଁ ନ ଥିବ ଅଧିକାର ॥
ଯେସନେ ପଶୁ ବିକା ଜନ । ବିକିବାଯାଏ ଥାଏ ପୁଣ ॥
ବିକଲେ ତାଙ୍କ ପଣ ଯାଇ । ଚିନ୍ତିବା ଲୋକ ତା ନୁହଇ ॥
ସେହିପ୍ରକାରେ ନିବେଦନ । କରେ ଯେ ଆତ୍ମା ସହିତେଣ ॥
ଆତ୍ମା ନିବେଦନଟି ସେହି । ଯା ଋଷିମାନେ ଛନ୍ତି କହି ॥
ଯାହା କହିଣ ଶେଷଦେବ । ଲଭିଲେ କୃଷ୍ଣ ଭକ୍ତି ଭାବ ॥
ଏମନ୍ତ ସାଧନ ଏ ନବଧା । ସୁଜନ ଜନେ କର ଶ୍ରଦ୍ଧା ॥
ଏଥିରୁ ଅଙ୍ଗେ ଯେ କରନ୍ତି । ନିଶ୍ଚେ ତାଙ୍କର ହୁଏ ଭକ୍ତି ॥
କୃଷ୍ଣଚରଣେ କରି ଆଶ । କହିଲା ଶିଶୁ ଭୀମଦାସ ॥

ଇତି ଶ୍ରୀ ହରିଭକ୍ତିଚନ୍ଦ୍ରୋଦୟେ ବୈଧୀସାଧନ ମୋକ୍ଷନବଧା
କଥନେ ନାମ ଦ୍ୱାଦଶୋଽଧ୍ୟାୟଃ ।

---

## ତ୍ରୟୋଦଶ ଅଧ୍ୟାୟ ।

( ଦର୍ଶନାଦ ଦ୍ୱାଦଶ ଅଙ୍ଗ )

ସୁଜନେ ଶୁଣ ସାଧୁ କଥା । ଭକ୍ତିର ସାଧନ ବ୍ୟବସ୍ଥା ।
ଶ୍ରୀକୃଷ୍ଣ ସ୍ଥାନକୁ ଗମନ । କହିବା ଭକ୍ତି ଏବେ ଶୁଣ ।
ସ୍ଥାନ ଗୃହ ଯେ କ୍ଷେତ୍ର ବେନି । ବୋଲିଣ କହିଛନ୍ତି ମୁନି ।
ଗୃହକୁ କରିବ ଗମନ । ସାଧନ ଅଙ୍ଗ ବିଧି ଶୁଣ ।
ଯେ ହରିଭକ୍ତି ସୁଧୋଦୟେ । ଗ୍ରନ୍ଥରେ ଅଛି ଏ ନିଶ୍ଚୟେ ।
କୃଷ୍ଣଙ୍କୁ କରିବ ଦର୍ଶନ । ବୋଲି ଯେ କରନ୍ତି ଗମନ ।
ସେ ଜାଣ ଜନନୀ ଉଦର । ପ୍ରବେଶ ନୁହନ୍ତି ଆବର ।
କ୍ଷେତ୍ରକୁ ଯିବା କଥା ଶୁଣ । ଯେ ଉପ-ପୁରାଣ ବଚନ ।
ଏ ଭବ ସଂସାର କାନ୍ତାର । ଏଥିରୁ କରନ୍ତି ନିସ୍ତାର ।
ଆପଣା ବେନି ଯେ ଚରଣ । ଯେ କରେ ତୀର୍ଥକୁ ଗମନ ।
ଏବେ ଏ ଦର୍ଶନ ବିଚାର । ସୁଜନେ ସାବଧାନ କର ।
ଯେ କୃଷ୍ଣ ଦର୍ଶନ କରନ୍ତି । ଆବର ଉତ୍ସବ ଆଳତି ।
ପ୍ରଥମେ ଶ୍ରୀମୂର୍ତ୍ତି ଦର୍ଶନ । ଯେ ଅଛି ବରାହପୁରାଣ ।
ଶ୍ରୀବୃନ୍ଦାବନରେ ଗୋବିନ୍ଦ । ଯେ ଦେଖେ ହୋଇଣ ଆନନ୍ଦ ।
ସେ ଯମପୁରକୁ ନ ଯାନ୍ତି । ତାଙ୍କର ହୁଏ ସଦଗତି ।
ଆଳତି ଦରଶନ ଶୁଣ । ସ୍କନ୍ଦ ପୁରାଣର ବଚନ ।
ଆଳତି ଦର୍ଶନ ଯେ କରେ । କୃଷ୍ଣଙ୍କୁ ସାନନ୍ଦ ଚିତ୍ତରେ ।
ଛାଡନ୍ତି ବ୍ରହ୍ମହତ୍ୟାମାନ । ନାଶ ହୁଅନ୍ତି ନିଶ୍ଚେ ଜାଣ ।
ଉତ୍ସବ ଦର୍ଶନର ବାଣୀ । ଭବିଷ୍ୟତରେ ଯାହା ପୁଣି ।
ଉତ୍ସବ ଗୁଣ୍ଡିଚ୍ଚ ଅବ୍ଦରେ । ଦର୍ଶନ କରନ୍ତି ଯେ ନରେ ।
ଚଣ୍ଡାଳ ଅବ୍ଦରେ ଯେତେକ । ଦେବତା ହୁଅନ୍ତି ତେତେକ ।
ପୂଜା ଦର୍ଶନ ଏବେ ଶୁଣ । ଯେ ଅଙ୍ଗ ପୁରାଣ ବଚନ ।
ପୂଜାରିବେଳେ ନରହରି । ଯେତିକି ଦର୍ଶନ ଯାଇଁକରି ।

ଯେ କୋଟି କୋଟି ଫଳମାନ । ଲଭନ୍ତି ନିଷ୍ଟେ କରି ଜାଣ ॥
ଏ ଭାବେ ଦରଶନ ଅଙ୍ଗ । ସୁଜନଜନେ କର ବେଗ ॥
କୃଷ୍ଣଙ୍କୁ କଲେ ପରିକ୍ରମା । ଅଙ୍ଗର ମହିମା ଶୁଣିମା ॥
ଏ ହରିଭକ୍ତି ସୁଧୋଦୟେ । ଗ୍ରନ୍ଥରେ ଅଛଇ ନିଶ୍ଚୟେ ॥
କୃଷ୍ଣଙ୍କୁ କରେ ପ୍ରଦକ୍ଷିଣ । ଯେ ସେ ଶରଧା ଚିତ୍ତେ ଜାଣ ॥
ଲେଙ୍ଘିଟି ତାର ଆବର୍ତ୍ତନ । ଭବ ସଂସାରେ ଲୋଟିହି ପୁଣ ॥
ଶ୍ରୀମୂର୍ତ୍ତି ଚରଣ ସ୍ପରଶ । ଆବର ଶୁଣିବା ବିଶେଷ ॥
ଏ ହାଦେ ବିଷ୍ଣୁ ଧର୍ମୋତ୍ତରେ । କହିଅଛନ୍ତି ସ୍ୱବକ୍ତ୍ରରେ ॥
କହିଣ ଅଙ୍ଗର ପବିତ । ସୁଧୀ ଯେ କହିଣ ଯୁକତ ॥
ଛୁଅନ୍ତି ଶ୍ରୀମୂର୍ତ୍ତି ଚରଣ । ସକଳ ପାପ ନାଶ ଜାଣ ॥
ଯେ ନିଜ କାମନା ତାଙ୍କର । ସିଦ୍ଧ ଯେ ହୁଅଇ ଆବର ॥
ଯେ ଅଙ୍ଗ-ପରିଚର୍ଯ୍ୟା ଜାଣ । ତହିଁ ବିଗ୍ରହ ଏବେ ଶୁଣ ॥
ଛବ ଅଲଟ ଯେ ବିଞ୍ଚଣି । ଚାମର ଆଦି ଯେତେ ପୁଣି ॥
ଏଥିରେ ଶ୍ରୀକୃଷ୍ଣଙ୍କ ସେବା । ତା ପରିଚର୍ଯ୍ୟା ଯେ ଜାଣିବା ॥
ଏଥୁ ମହିମା ଶୁଣ ପୁଣି । ନାରଦୀୟ ପୁରାଣ ବାଣୀ ॥
ଯେ ହରିମନ୍ଦିରେ ମୁହୂର୍ତ୍ତେ । ଏ ସେବା କରନ୍ତି ଯୁଗତେ ॥
ସେ ନିତ୍ୟ ବଇକୁଣ୍ଠ ବାସ । ସୁଖେଣ ଲଭନ୍ତି ଅବଶ୍ୟ ॥
ସମ୍ମୁଖେ କରିବ ନର୍ତ୍ତନ । ଅଙ୍ଗ ମହିମା ଏବେ ଶୁଣ ॥
ଦ୍ୱାରକା-ମାହାତ୍ମ୍ୟର ବାଣୀ । ଭକ୍ତି ଭାବରେ ଯେହୁ ପୁଣି ॥
ହୃଷ୍ଟ ହୋଇଣ କରେ ନୃତ୍ୟ । ସେ ପାପ ନାଶନ୍ତି ଯୁଗନ୍ତ ॥
ଶତ ମନ୍ୱନ୍ତ ପାପ ମାନ । ନାଶ ହୁଅନ୍ତି ନିଶ୍ଚେ ଜାଣ ॥
ଅଦ୍ଭୁତ ନାରଦ ଉକ୍ତିରେ । ଯେ ଅଛୁ ଶୁଣିବା ସଧୀରେ ॥
ଯେବରେ ସମ୍ମୁଖେ ନର୍ତ୍ତନ । ତାଳିକା କରିଣ ବାଦନ ॥
ତାର ପାତକ ପକ୍ଷିମାନେ । ଯେ ବୀଜ କୂପର ବଧାନେ ॥
ତାଙ୍କ ଦେହରେ ବସା ଥାଇ । ବହୁତକାଳୁ ଥାନ୍ତି ରହି ॥

ସେ ତାଳ ପତ୍ରରେ ପୁଣ । ଉର୍ଦ୍ଧ ପଳାନ୍ତି କଷ୍ଟେ ଜାଣ ॥
ଧୂପର ମାଳ ସଉରଭ । ଆଘ୍ରାଣ କରିବାର ଭାବ ॥
ଯେ ହରିଭକ୍ତି ସୁଧୋଦୟେ । କହୁଅଛନ୍ତି ଯା ନିଶ୍ଚୟେ ॥
ଧୂପର ସଉରଭମାନ । ଆଘ୍ରାଣ କରନ୍ତି ଯେ ଜନ ॥
ଏ ଭବ-ସର୍ପର ଦଂଶନେ । ବିଷେ ଅଚେତ ଯେଉଁଜନେ ॥
ଯେ ଧୂପଧୂମ ତାକୁ ନାଶ । ନାସାରେ ହୋଇଣ ପ୍ରବେଶ ॥
ଝଡ଼ାଇ ଏ ଭବ ଗରଳ । ସେ ସ୍ୱଗେ ହୁଅନ୍ତି ନିର୍ମଳ ॥
ମାଳର ସଉରଭ ବାଣୀ । ଛନ୍ଦେ ଯା କହିଛନ୍ତି ପୁଣି ॥
କୃଷ୍ଣର ମାଳ ଯେ ଚନ୍ଦନ । ଅବା ନିର୍ମାଲ୍ୟ ଗନ୍ଧମାନ ॥
ନାସିକା ରନ୍ଧ୍ରରେ ଯାହାର । ଜାଣିବ ତତକାଳ ତାର ॥
ପାପ ଯେ ପଞ୍ଜର ବନ୍ଧନ । ଫିଟଇ ସଂଶୟ ନ ଘେନ ॥
ନୈବେଦ୍ୟ ଚରଣଉଦକ । ଆସ୍ୱାଦ କରିବାର ବାକ୍ୟ ॥
ପଦ୍ମପୁରାଣେ ଛନ୍ତି କହି । କୋଟି ଯାଗର ଫଳ ପାଇ ॥
ଜୀବନମୁକ୍ତି ସେହି ଜାଣ । ଯେ କରେ ନିର୍ମାଲ୍ୟ ଭକ୍ଷଣ ॥
ଯେ ଫଳ ପାଦ ଉଦକରେ । ସେ ଏହି ପଦ୍ମପୁରାଣରେ ॥
ଦାନ ଯେ ଯାଗ ଅଧ୍ୟୟନ । ଅବର ଦେବତା ଅର୍ଚ୍ଚନ ॥
ଏଥିରେ ନ ପାଇ ଯା ଦୁଃଖେ । ସେ ବିଷ୍ଣୁ ଚରଣଉଦକେ ॥
ପରମ ଗତି ସେ ଲଭନ୍ତି । ଯେ ପାଦ ଉଦକ ପିଅନ୍ତି ॥
ଯାନ୍ତେ ଆସନ୍ତେ ନାରାୟଣ । ପଛେଟି ଯିବା ଫଳ ଶୁଣ ॥
ବ୍ରହ୍ମାଣ୍ଡ ପୁରାଣର ବାଣୀ । ଯାନ୍ତେ ଆସନ୍ତେ ଚକ୍ରପାଣି ॥
ଯେ ଜାଣ ପାଛେଟିଣ ଯାନ୍ତି । ସେ ସର୍ବ ପାତକ ନାଶନ୍ତି ॥
ଯାତ୍ରାସମୟମାନଙ୍କର । ଗହଣେ ଥିବାର ବିଚାର ॥
ଭବିଷ୍ୟତର ପୁରାଣବାଣୀ । ଯାତ୍ରାସମୟେ ଚକ୍ରପାଣି ॥
ଅଗେ ବା ପଛ ପଚ୍ଛୋତ୍ସ୍ୱାରେ । ଯେ ଜାଣ ଥାନ୍ତି ଗହଣରେ ॥
ଚଣ୍ଡାଳ ଆଦ୍ଭ ଜନ୍ମମାନ । ସମସ୍ତେ ବିଷ୍ଣୁର ସମାନ ॥

ଉତ୍ସବ ହରିର ମନ୍ଦିରେ । ଯେ କରେ ବିଭବାନୁସାରେ ।
ଏ ପଦ୍ମପୁରାଣର ବାଣୀ । ଯେ କରେ ମହୋତ୍ସବ ପୁଣି ।
ସାନନ୍ଦେ ହରିର ମନ୍ଦିରେ । ଯେ ଲୋକମାନଙ୍କୁ ନିତ୍ୟରେ ।
ଭାରତେ ହୋଏ ମହୋତ୍ସବ । ଏକଥା ଜାଣ ତୁମ୍ଭେ ଧ୍ରୁବ ।
ଜନ୍ମ ଦିବସ ଯାତ୍ରାମାନ । କରିବା ଅଙ୍ଗ ଏ ବିଷମ ।
ଭବିଷ୍ୟତର ଗ୍ରନ୍ଥ ବାଣୀ । କୁହନ୍ତି ଅଛନ୍ତି ଯାହା ପୁଣି ।
ଯେଉଁଣ ଦିନରେ ଜନମ । ଦେବକୀ ସୁତ ଭଗବାନ ।
ସେ ଦିନ-ମାନଙ୍କେ ଉତ୍ସବ । କରନ୍ତେ ପ୍ରଭୁ ବାସୁଦେବ ।
ବେଗେଣ ହୁଅନ୍ତି ପ୍ରସନ୍ନ । ଏଥି ସଂଶୟ ନାହିଁ ଜାଣ ।
ଏ ଅଧ୍ୟା ଦ୍ୱାଦଶ ଅଙ୍ଗରେ । ସମ୍ପୂର୍ଣ୍ଣ ହୋଇଲା ବେଗରେ ।
ସୁଜନମାନେ ଚିତ୍ତେ ଧର । ଏହା ଯେ କରିବ ବିଚାର ।
ପ୍ରଭୁ ଅଛନ୍ତି ଯେଉଁଠାରେ । କ୍ଷେତ୍ର ଯେ ତୀର୍ଥମାନଙ୍କରେ ।
ନୀଳକନ୍ଦର ବୃନ୍ଦାବନ । ଆଦରେ ଯେଉଁକାଠି ଜାଣ ।
ଯହିଁରେ ଯେଉଁ ରୂପ ଧରି । ପ୍ରଭୁ ଅଛନ୍ତି ବିଜେ କରି ।
ଶ୍ରୀ ମୂର୍ତ୍ତିମାନଙ୍କରଠାରେ । ଆଦରେ କରିବ ବେଗରେ ।
କହଇ ଦାସ ଭୀମସେନ । ଶ୍ରୀକୃଷ୍ଣ ଭକ୍ତି ଯେ ସାଧନ ।
କୃଷ୍ଣ ଚରଣେ କରି ଆଶ । କହେ ସାଧନା ଭକ୍ତି ରସ ।

ଇତି ଶ୍ରୀ ହରିଭକ୍ତିଚନ୍ଦ୍ରୋଦୟେ ବୈଧୀସାଧନେ କୃଷ୍ଣ ଦର୍ଶନାଦି ଦ୍ୱାଦଶାଙ୍ଗ କଥନେ ନାମ ତ୍ରୟୋଦଶୋଽଧ୍ୟାୟ ।

---

## ଚତୁର୍ଦ୍ଦଶ ଅଧ୍ୟାୟ ।

(ଜପାଦି ପଞ୍ଚଅଙ୍ଗ ।)

ସୁଜନେ ସାବଧାନ କର । ଶ୍ରୀକୃଷ୍ଣ ଭକ୍ତିର ବିଚାର ।
ମନ୍ତ୍ରକୁ ଜପିବା ବିଧାନ । ପଦ୍ମ ପୁରାଣେ ଯାହା ଶୁଣ ।
ଶୁଦ୍ଧ ଭାବରେ ବସି ଜପ । ସୁଲଘୁ କରିଣ ଉଚ୍ଚାର ।

ଯେ କୃଷ୍ଣ ମନ୍ତ୍ର ଜପ କରେ । ସେ ମୋକ୍ଷ ହୁଅନ୍ତି ବେଗରେ ॥
ଧ୍ୟାନ ଅଙ୍ଗର ବିଶେଷଣ । ରୂପ ଯେ ଗୁଣ କ୍ରୀଡ଼ାମାନ ॥
ପ୍ରଥମେ ରୂପ ଧ୍ୟାନ ପୁଣି । ନରସିଂହପୁରାଣ ବାଣୀ ॥
ଭଗବାନଙ୍କ ପାଦ ଧ୍ୟାନ । ଯେ କରେ ନିଷ୍ପାପୀ ସେଜନ ॥
ଶୁଣ ଧ୍ୟାନର ଫଳ ଯେହି । ଯା ବିଷ୍ଣୁ ଧର୍ମେ ଛନ୍ତି କହି ॥
ଯେ କରେ କୃଷ୍ଣ ଗୁଣ ଧ୍ୟାନ । ସେ ଲଭେ ଶ୍ରୀକୃଷ୍ଣ ଚରଣ ॥
କ୍ରୀଡ଼ା ଧ୍ୟାନରେ ଯେହ୍ନୁ ଫଳ । ପଦ୍ମପୁରାଣର ବିଚାର ॥
କୃଷ୍ଣର କ୍ରୀଡ଼ା ଯେ ଯୁଗତ । ମାଧୁର୍ଯ୍ୟ ସାର ଅଦଭୁତ ॥
ଧ୍ୟାନ କରନ୍ତି ଯେଉଁଜନ । ଭବ ବନ୍ଧରୁ ମୋକ୍ଷ ଜାଣ ॥
କୃଷ୍ଣର ସ୍ତବ ସ୍ତୋତ୍ର ଯେତେ । ଗୀତା ଆଦରେ ଯେ ଯୁକତେ ॥
ପଠନ କରିବାର ବାଣୀ । ସ୍କନ୍ଦ ପୁରାଣେ ଯାହା ପୁଣି ॥
ଶ୍ରୀକୃଷ୍ଣ ସ୍ତବ-ରତ୍ନମାନ । ଯା ଜିହ୍ୱା ଅଳଙ୍କୃତ ଜାଣ ॥
ତାହାଙ୍କୁ ସ୍ୱର୍ଗରେ ଅମରେ । ବନ୍ଦନ କରନ୍ତି ବେଗରେ ॥
ନୃସିଂହ ପୁରାଣରେ ଜାଣ । ଆଉର ଅଛି ଯେ ବଚନ ॥
ମଧୁସୂଦନଙ୍କ ଛାମୁରେ । ସ୍ତବ ପଠନ ଯେହ୍ନୁ କରେ ॥
ସେ ସର୍ବ ପାପ ବିନାଶିଣ । ବିଷ୍ଣୁ ଲୋକେ କରେ ଭ୍ରମଣ ॥
ଗୀତ ଯେ ଗାୟନ ଅଙ୍ଗର । ସ୍କନ୍ଦେ ଶୁଣିବା ବିଚାର ॥
ଲିଙ୍ଗ ପୁରାଣେ ଛନ୍ତି କହି । ଭଗବାନଙ୍କ ନାମ ଯେହି ॥
ଆଉର ଶୁଣ ଲୀଳାମାନ । ଗୀତରେ କରନ୍ତି ଗାୟନ ॥
ସାଲୋକ୍ୟ ମୁକ୍ତ ସେ ହୁଅନ୍ତି । ଯେ କୃଷ୍ଣ ମହିମା ଗାବନ୍ତି ॥
କୃଷ୍ଣର କୃପା ଇଚ୍ଛା କରେ । ଯେ ସେ ନିରତେ ମାନସରେ ॥
ତାହା ଶୁଣିବା ମନଦେଇ । ବ୍ରହ୍ମା ସ୍କନ୍ଦରେ ଛନ୍ତି କହି ॥
ଦଶମସ୍କନ୍ଧ ଭାଗବତେ । କହିଣ ଅଛନ୍ତି ଯୁଗତେ ॥
ଆପଣା କର୍ମର ବିପାକ । ଭୁଞ୍ଜୁ ଥାଆନ୍ତି ପୁଣ ଲୋକ ॥
କୃଷ୍ଣର କୃପା ହେବ ମୋତେ । ବୋଲି ବିଚାରୁ ଥିବ ଚିତ୍ତେ ॥

ମୁକ୍ତି ପଦରେ ଯେ ପ୍ରମାଣ । ତାଙ୍କର ଅଧିକାର ଜାଣ ॥
କୃଷ୍ଣେ କରିବ ବିଜ୍ଞାପନା । ଭକ୍ତିର ଶୁଣିମା ମହିମା ॥
ଯେ ଜାଣେ ବିଜ୍ଞାପନା ଭକ୍ତି । ତିନି ଯେ ପ୍ରକାର କହିଅନ୍ତି ॥
ପ୍ରଥମେ ପ୍ରାର୍ଥନା ଅମ୍ବିକା । ଲାଳସା ଦଇନ ବୋଧିକା ॥
ପ୍ରାର୍ଥନା ଅମ୍ବିକାର ଶୁଣ । ପଦ୍ମପୁରାଣେ ଯେ ବଚନ ॥
ନିଜ ଯେ ଯୁବତୀର ଚିତ୍ତ । ଆପଣା ଯୁବାରେ ଯେମନ୍ତ ॥
ଯୁବାର ଯୁବତୀରଠାରେ । ମନ ଯେମନ୍ତ ପରକାରେ. ॥
ସେହି ପ୍ରକାରେ ବିଜ୍ଞାପନ । କୃଷ୍ଣେ କରିବ ନିବେଦନ ॥
ଲାଳସମୟୀର ଯେ ବାଣୀ । ଲକ୍ଷଣ ଶୁଣିବାକୁ ପୁଣି ॥
ନାରଦ ପଞ୍ଚ ଯେ ରାତ୍ରରେ । କହିଅଛନ୍ତି ଯା ବେଭାରେ ॥
କୃଷ୍ଣ ଛାମୁରେ ବିଜ୍ଞାପନ । ଯେ କରେ ଏମନ୍ତ ଭାବିଣ ॥
ହେ ପ୍ରଭୁ ମୁଁ କେଉଁ ଦିନରେ । ଗୋପରେ ଯମୁନାଙ୍କ ତୀରେ ॥
ନାମ ଗାୟନ କରି ମୁହିଁ । ଅଶ୍ରୁ ପୁଲକ ଥିବ ହୋଇ ॥
ଆଉରି କରୁଥିବି ନୃତ୍ୟ । ନାମରେ ହୋଇ ଉନମତ୍ତ ॥
ଲାଳସାମୟୀ ଏହା କହି । ଏଥୁ ଶୁଣିବା ମନ ଦେଇ ॥
ଦୈନ୍ୟ ବୋଧିକା ବିଜ୍ଞାପନା । ଯେ ତହିଁ ଲକ୍ଷଣ ଶୁଣିମା ॥
ମୋ ସମ ନାହିଁ ପାପୀ ଜନ । ମୁଁ ବଡ଼ ଅପରାଧୀ ପୁଣ ॥
ଏହା ଯେ ପରିହାର ପାଇଁ । ମୁଁ କିସ କହିବି ଗୋସାଇଁ ॥
ତୁମ୍ଭେତ ଅଟ ଅନ୍ତର୍ଯ୍ୟାମୀ । କୋଟି ଯେ ବ୍ରହ୍ମାଣ୍ଡର ସ୍ୱାମୀ ॥
ଏ ତିନି ଭାବେ ବିଜ୍ଞାପନ । ଯେ କୃଷ୍ଣେ କରେ ନିବେଦନ ॥
ତାଙ୍କର ଫଳ ବାଦେ ଶୁଣ । ଯେ ସ୍କନ୍ଦ ପୁରାଣ ବଚନ ॥
ମୋକ୍ଷ ଯେ ଦ୍ୱାର ଅରଗଲ । ସେ ଜାଣ ଫେଡ଼ନ୍ତି ନିକର ॥
ଆପଣା ପ୍ରିୟ ଦ୍ରବ୍ୟମାନ । ନିବେଦନର ଭକ୍ତି ଶୁଣ ॥
ଶ୍ରୀ ଭାଗବତ ଏକାଦଶେ । ଶ୍ରୀମୁଖ ଆଜ୍ଞା ଏ ବିଶେଷେ ॥
ଯେ ଜାଣ ପ୍ରିୟ ଦ୍ରବ୍ୟମାନ । ମୋତେ କରନ୍ତି ନିବେଦନ ॥

ଯେ ଦ୍ରବ୍ୟ ଅଗଣିତା ହୋଇ । ଯେ ଲୋକମାନଙ୍କର ହୋଇ ।
ତଦର୍ଥ ଅଖିଳ ଯେ କର୍ମ । କରିବା ଭକ୍ତି ଏବେ ଶୁଣ ।
ନାରଦ ପଞ୍ଚରାତ୍ର ବାଣୀ । ଯା ହାଦେ କହୁଛନ୍ତି ପୁଣି ।
ବେଦେ ଯେ କର୍ମମାନ ଯେତେ । ଲୌକିକ କର୍ମ୍ମଟି ଯୁଗତେ ।
ହରିଭକ୍ତିର ଅନୁକୂଳ । କରଣ କରିବା ସକଳ ।
ତହିଁରୁ ଭକ୍ତି ହୁଏ ଜାତ । ଏ ହାଦେ ଅଛଇ ଯୁଗତ ।
ଶରଣାଗତର ବିଧାନ । ସୁଜନେ ସାବଧାନେ ଶୁଣ ।
ନରସିଂହ ପୁରାଣ ବାଣୀ । ଶ୍ରୀମୁଖେ କହୁଛନ୍ତି ପୁଣି ।
ହେ ଦେବ ଦେବ ଜନାର୍ଦ୍ଦନ । ମୁହିଁ ଯେ ତୁମ୍ଭର ପ୍ରପନ୍ନ ।
ଏମନ୍ତ ମନେ ବିଚରନ୍ତି । ଯେ ମୋତେ ଶରଣ ପଶନ୍ତି ।
ତାଙ୍କୁ ସକଳ କ୍ଳେଶ ପୁଣ । ହରଇ ନାଅଇ ପ୍ରମାଣ ।
କୃଷ୍ଣର ପ୍ରିୟ ଯେ ଯୁଗତେ । ତୁଳସୀ ଭକ୍ତି ଶାସ୍ତ୍ରଯେତେ ।
ମଥୁରା ବୈଷ୍ଣବର ଆଦ । ସେବାର ଶୁଣ ଫଳବଧି ।
ପ୍ରଥମେ ତୁଳସୀ ସେବନ । ସ୍କନ୍ଦ ପୁରାଣେ ଯାହା ଶୁଣ ।
ତୁଳସୀ ନବଧା ଯେ ଭକ୍ତି । ଶୁଣିବା ସ୍ଥିର କରି ଚିତ୍ତ ।
ଦର୍ଶନ ସ୍ପର୍ଶ ଯେ ଧ୍ୟାନ । ଶ୍ରବଣ କୀର୍ତ୍ତନ ରୋପଣ ।
ସେବା କରିବା ଦଣ୍ଡବତ । ଆବର ପୂଜା ଯେ ଯୁଗତ ।
ଏ ଭାବେ ଭକ୍ତି ଯେ ନବଧା । ଯେ କରେ କରି ବହୁ ଶ୍ରଦ୍ଧା ।
ସେ ଯୁଗ ସହସ୍ର କୋଟିଏ । ବସନ୍ତି ଯାଇଁ ହରି ଗୃହେ ।
ଭକ୍ତି ଯେ ଶାସ୍ତ୍ର କଥା ଶୁଣ । ସ୍କନ୍ଦ ପୁରାଣର ବଚନ ।
ଭକ୍ତିର ଶାସ୍ତ୍ର ଯେ ଶୁଣନ୍ତି । ଯେ ତାହା ପଢ଼ନ୍ତି ଗୁଣନ୍ତି ।
ଧନ୍ୟ ମାନବ ସେହୁ ଜାଣ । ପ୍ରସନ୍ନ ହୋନ୍ତି ଭଗବାନ ।
ବୈଷ୍ଣବ ଶାସ୍ତ୍ର ଘରେ ଯାର । ଅଛନ୍ତି ଅପାପୀ ସେ ନର ।
ସେ ଘରେ ପ୍ରଭୁ ଭଗବାନ । ସ୍ୱୟଂ ବସନ୍ତେ ବୋଲି ଜାଣ ।
ମଥୁରାମଣ୍ଡଳର ବାଣୀ । ବ୍ରହ୍ମାଣ୍ଡପୁରାଣେ ଯେ ପୁଣି ।

ନବଧା ଭକ୍ତି ମଥୁରାର । ଭକ୍ତିରେ ତରନ୍ତି ସେ ନର ॥
ମଥୁରା ଶ୍ରବଣ କୀର୍ତ୍ତନ । ବାଞ୍ଛିତ ଆବର ସ୍ମରଣ ॥
ପୋଷିବ ଆପଣାର ଜୀବ । ସ୍ପରଶ ଅଶେଷ ସେବକ ॥
ଏ ନବ ପ୍ରକାର ବିଚାର । ଯେ କରେ ମଥୁରାମଣ୍ଡଳ ॥
ତାଙ୍କର ଭକ୍ତି ହୋଏ ପୁଣ । ଲଭନ୍ତି ଶ୍ରୀକୃଷ୍ଣ ଚରଣ ।
ବୈଷ୍ଣବମାନଙ୍କର ସେବା । ସ୍କନ୍ଦ ପୁରାଣେ ଯା ଶୁଣିବା ॥
ଯେ ଶଙ୍ଖ ଚକ୍ରରେ ଅଙ୍କିତ । ବସ୍ଥ ଚୂଳରେ ଶୋଭିତ ।
ଗୋପୀ ଚନ୍ଦନ ଲିପିତାଙ୍ଗ । ଦର୍ଶନେ ନାଶେ ପାପସଙ୍ଘ ॥
ଆବର ପ୍ରଥମ ସ୍କନ୍ଧରେ । ଯେ ଅଛି ଶୁଣିବା ସୁଧୀରେ ॥
ବୈଷ୍ଣବମାନଙ୍କ ସ୍ମରଣ । ମାନବଙ୍କେ ଶୁଦ୍ଧ ଗୃହ ଜାଣ ॥
ତାଙ୍କର ଦର୍ଶନ ସ୍ପରଶ । ପାଦ ଧଉତର ବିଶେଷ ॥
ଆବର ଆସନ ସେବନ । ଏଥିର କହିବ କେ ପୁଣ୍ୟ ॥
ଅନ୍ୟର ଶୁଣିବା ସୁଜନେ । ଯେ ଅଛି ଆଦ୍ୟ ଯେ ପୁରାଣେ ॥
ଅର୍ଜୁନେ କହନ୍ତି ଗୋସାଇଁ । ଶୁଣ ଅର୍ଜୁନ ମନଦେଇ ॥
ଯେ ମୋର ଭକ୍ତି କରେ ଜନ । ସେ ମୋର ଭକ୍ତ ନୁହେ ଜାଣ ।
ମୋ ଭକ୍ତମାନଙ୍କର ଯେହୁ । ସେବା କରନ୍ତି ଭକ୍ତ ସେହୁ ।
ବୈଷ୍ଣବମାନଙ୍କ ବିଚାର । ପୁରାଣେ ଅଛଇ ଅପାର ।
ଗୀତ ବିସ୍ତାର ହେବ ବୋଲି । ଭୟ କାରଣ ନ କହିଲି ॥
ଦଶ ଯେ ଅଙ୍ଗ ଏ ଅଧ୍ୟାରେ । ଯେବା ଯେ ଅଙ୍ଗର ଆଦରେ ॥
ସାଧନ ଭକ୍ତି ଏହୁ ଜାଣ । ସୁଜନେ କର ସାବଧାନ ॥
ଚତୁର୍ଦ୍ଦଶ ଯେ ଅଧ୍ୟା ଜାଣ । ଏଠାରୁ ହୋଇଲା ସମ୍ପୂର୍ଣ୍ଣ ।
କୃଷ୍ଣଚରଣ ବେନ ଚିନ୍ତି । ଭୀମ କହଇ ହରିଭକ୍ତି ॥ ୧୦୦ ॥

ଇତି ଶ୍ରୀ ହରିଭକ୍ତିଚନ୍ଦ୍ରୋଦୟେ ବୈଧୀସାଧନେ ଜପଆଦି
ଦଶଅଙ୍ଗ କଥନେ ନାମ ଚତୁର୍ଦ୍ଦଶୋଽଧ୍ୟାୟଃ ।

---

## ପଞ୍ଚଦଶ ଅଧ୍ୟାୟ ।

### ( ଊର୍ଜାଦି ଦଶଅଙ୍ଗ )

ସ୍ୱଜନେ ଶୁଣ ସାଧୁ କଥା । ଭକ୍ତିର ସାଧନ ବ୍ୟବସ୍ଥା ॥
କାର୍ତ୍ତିକ ମାସକୁ ଆଦର । କରିବ ଅଙ୍ଗର ବିସ୍ତର ॥
ପଦ୍ମପୁରାଣେ ଅଛି ଯାହା । ଶୁଣିବା ସାବଧାନେ ତାହା ॥
ଦାମୋଦରଙ୍କୁ ଯେବେ ସ୍ତୁତି । ଜନ ଯେ ଅର୍ଚ୍ଚନ୍ତି ଭକତି ॥
ସେହି ପ୍ରକାରେ ମାସଠାରେ । ଆଦର ଯେଉଁ ଜନ କରେ ॥
ସ୍ନାନ ହବିଷ୍ୟ ପୂଜା ଆଦି । ଦୀପ ସହିତେ ଯେତେ ବିଧି ॥
କରନ୍ତେ ଭକ୍ତି ହୁଏ ଜାତ । ଏ ହାଦେ ଅଛଇ ସ୍ତୁଗତ ॥
ଶ୍ରୀ ଭାଗବତେ ଯେ ଆସ୍ୱାଦ । କରିବା ଶୁଣିବା ସମ୍ବାଦ ॥
ପ୍ରଥମସ୍କନ୍ଧେ ଅଛି ଯାହା । ଶୁଣିବା ସାବଧାନେ ତାହା ॥
ବେଦ ଯେ କଳ୍ପତରୁ ବର । ଶ୍ରୀ ଭାଗବତ ତହିଁ ଫଳ ॥
ଅମୃତ ଦ୍ରବରେ ସଂଯୁତ । ଶୁକ ମୁଖରୁ ଉପଗତ ॥
ସେ ରସ ପୁଣ ପୁଣ କରି । ଭାବୁକେ ପିଅ ତା ବିସ୍ତର ॥
ଆଲୟ ମୋକ୍ଷ ପରଯନ୍ତେ । କହିଣ ଅଛନ୍ତି ସ୍ତୁଗତେ ॥
ଆହୁରି ଶୁଣ ମନ ଦେଇ । ଏହି ପ୍ରଥମେ ଛନ୍ତି କହି ॥
ଶୁକଦେବଙ୍କର ଉକତ । ଶ୍ରୀ ଭାଗବତ ଯେ ଚରିତ ॥
ଯେ ତାହା ପଢ଼ନ୍ତି ଶୁଣନ୍ତି । ସେ ଭବବନ୍ଧ ବିନାଶନ୍ତି ॥
ସ୍ୱଜାତୀୟ ବୈଷ୍ଣବ ସଙ୍ଗ । ହେବାର ଶୁଣିବା ସେ ଅଙ୍ଗ ॥
ଚତୁର୍ଥସ୍କନ୍ଧ ଭାଗବତେ । ଯା କହି ଅଛନ୍ତି ସ୍ତୁକତେ ॥
ସ୍ୱଜାତୀୟ ସାଧୁଙ୍କ ସଙ୍ଗ । ଯେ ଜନମାନେ ହୋନ୍ତି ବେଗ ॥
ସେ କାଳ କ୍ଷଣକ ତାଙ୍କର । ମହିମା କହିବ କେ ଆର ॥
ତହିଁକି ସମ ନୋହେ ସ୍ୱର୍ଗ । ଆବର ଜାଣ ଅପବର୍ଗ ॥
ଆହୁରି ଶୁଣିବା ନିଷ୍ଟୟେ । ଯେ ହରିଭକ୍ତି ସୁଧୋଦୟେ ॥
ସ୍ୱଜାତି ସାଧୁଙ୍କ ବିସ୍ତର । ସେ ଜାଣ ମଣିର ପ୍ରକାର ॥

ଯେମନ୍ତ ଏକ ଜାତ ମଣି । ମାଳରେ ଶୋଭା ପାନ୍ତି ପୁଣି ॥
ମିଶ୍ରିତ ହେଲେ ଶୋଭା ନୋହି । ଏ ହାଦେ ସ୍ୱରୂପ ଅଟଇ ॥
ତହିଁରେ ଆହୁରି ବିଗ୍ରହ । ଏକା ଯେ ଗୁଣ ତାହାଙ୍କର ॥
ଯେମନ୍ତ ମାଳ ଏକ ଗୁଣେ । ଭିନ୍ନ ରଜ୍ଜୁରେ ହୋନ୍ତି ଭିନ୍ନେ ॥
ସେହି ପ୍ରକାରେ ଏକ ଗୁଣ । ଏକ ଧର୍ମରେ ସଙ୍ଗ ଜାଣ ॥
ଆବର ନାମ ଯେ କୀର୍ତ୍ତନ । କରିବା ଅଙ୍ଗ ବିଧି ଶୁଣ ॥
ଆଦିପୁରାଣର ଏ ବାଣୀ । ପ୍ରଭୁ ଯା କହିଛନ୍ତି ପୁଣି ॥
ଅତ୍ୟନ୍ତ ଅନୁରାଗବଶେ । ହରଷେ ଅର୍ଜ୍ଜୁନଙ୍କ ପାଶେ ॥
ମୋର ସନ୍ନିଧେ ଯେଉଁ ଜନ । ମୋ ନାମ କରନ୍ତି କୀର୍ତ୍ତନ ॥
ସେ ଲୋକମାନଙ୍କ ଅଗ୍ରତ । ମୁଁ ଜାଣ ହୁଅଇ ଯୁକତ ॥
ଆହୁରି ପଦ୍ମ ଯେ ପୁରାଣେ । ଯେ ଅଛି ଶୁଣ ସାବଧାନେ ॥
ସହସ୍ର ଜନ୍ମ ହାଦେ ଜାଣ । ଯେ ସେବେ ଶ୍ରୀକୃଷ୍ଣଚରଣ ॥
ତାଙ୍କର ମୁଖେ ହରି ବାଣୀ । ନିରତେ ଜାତ ହୁଏ ପୁଣି ॥
ଯେ ଚିନ୍ତାମଣି କୃଷ୍ଣ ନାମ । ଚୈତନ୍ୟ ରସ ରୂପ ଜାଣ ॥
ବିଶୁଦ୍ଧ ନିତ୍ୟ ପୂର୍ଣ୍ଣ ମୁକ୍ତ । ରୂପର ଅଭିନ୍ନ ଯୁଗତ ॥
ଯେରୂପ ପ୍ରଭୁ ଭଗବାନ । ସେହି ପ୍ରକାରେ ନାମ ଜାଣ ॥
ନାମ ରୂପରେ ଭେଦ ନାହିଁ । ଯେ ନାମ ରୂପ ଜାଣ ସେହି ॥
ନାମ ଡାକିଲେ ମିଳେ ରୂପ । ଏ ହାଦେ ଦେଖୁଛି ସ୍ୱରୂପ ॥
ଅବନୀ ମଧ୍ୟେ ଭବଗ୍ରାହୀ । ନାମରୂପରେ ଛନ୍ତି ରହି ॥
ଏ ଯେଣୁ ନାମ ଆଶ୍ରେ କର । ହେଲେ ହୋଇବ ଭବୁ ପାର ॥
ମଥୁରାମଣ୍ଡଳ ସେବନ । ଅଙ୍ଗର ଶୁଣିବା ବିଧାନ ॥
ପଦ୍ମପୁରାଣର ଯେ ବାଣୀ । ସୁଜନେ ଶୁଣ ପରମାଣି ॥
ଆନ ଯେ କ୍ଷେତ୍ରମାନଙ୍କର । ମୁକ୍ତି ଲଭନ୍ତି ଜାଣ ନର ॥
ଯେ ପୁଣ ମୁକ୍ତି-ଜନମାନ । ସେ ଜାଣ ମଥୁରା ଭୁବନ ॥
ଶ୍ରୀକୃଷ୍ଣ ଭକ୍ତି ଇଚ୍ଛା କରି । ଲଭନ୍ତି ଥାଇଁ ମଧୁପୁରୀ ॥
ମଥୁରାମଣ୍ଡଳରେ ଥିଲେ । ସକଳ ସିଦ୍ଧି ହୋଇ ଭଲେ ॥
ମୋକ୍ଷ ସହିତେ ଚତୁର୍ବର୍ଗ । ଆବର ହୋଏ ଭକ୍ତିଯୋଗ ॥
ଧନ୍ୟ ସେ ମଥୁରାଭୁବନ । ବୈକୁଣ୍ଠ ବଡ଼ ବୋଲି ଜାଣ ॥

ତହିଁରେ ଅନେକ ଯେ ରହେ । ଶ୍ରୀକୃଷ୍ଣ ଭକ୍ତି ସିଦ୍ଧ ହୁଏ ॥
ଅଣଷଠୀ ଯେ ଅଙ୍ଗ ଜାଣ । ଏଠାକୁ ହୋଇଲା ସମ୍ପୂର୍ଣ୍ଣ ॥
ଯେ ପାଞ୍ଚ ଅଙ୍ଗର ବଗ୍ଭର । ଦୁର୍ଲ୍ଲଭ ଗୁଣ ତାହାଙ୍କର ॥
ଆଶ୍ଚର୍ଯ୍ୟ ଗୁଣ ଅଛି ତହିଁ । ଅଳ୍ପ ସାଧନେ ସିଦ୍ଧ ହୋଇ ॥
ସେବା ଯେ ଶ୍ରୀ ମୂର୍ତ୍ତିର ପାଦ । ଶ୍ରୀଭାଗବତର ଆସ୍ୱାଦ ॥
ସ୍ୱଜାତ ସାଧୁସଙ୍ଗ ଜାଣ । ଆବର ନାମ ଯେ କୀର୍ତ୍ତନ ॥
ମଥୁରା ମଣ୍ଡଳରେ ବାସ । ଏ ପାଞ୍ଚ ଅଙ୍ଗରେ ବଶେଷ ॥
ଅଛଇ ଯେଣୁ କର ଜାଣ । ସୁଜନେ ଭଜନ୍ତି ତାହା ଶୁଣ ॥
ଶ୍ରୀ ମୂର୍ତ୍ତି ଦୁର୍ଲ୍ଲଭ ଯୁଗତ । ଅଟନ୍ତି ଯଶୋଦାଙ୍କ ସୁତ ॥
ନବୀନ ଘନ ଯେ ସୁନ୍ଦର । କଳିତ ରୁଚୁ ପୀତାମ୍ବର ॥
ବଳାସ ମୁରଲି ଧାରଣ । ଶିଖି ଶିଖଣ୍ଡଚୂଳ ଜାଣ ॥
କଦମ୍ବ ବନରେ ସଞ୍ଚାର । ଶ୍ରୀମ ଭଜଇ ନିରନ୍ତର ॥
ଶ୍ରୀମୂର୍ତ୍ତି ଦୁର୍ଲ୍ଲଭ ଏ ଜାଣ । ସେବବ ତାଙ୍କର ଚରଣ ॥
ଶ୍ରୀଭାଗବତର ମଧ୍ୟରେ । ଦଶମ ଦୁର୍ଲ୍ଲଭ ବେଭାରେ ॥
ଯହିଁର ପଦମାନଙ୍କର । ଗୁଣିଲେ ଅକ୍ଷର ନିକର ॥
ପରମ ଶୁଭ ଜାଣ ହୋଇ । ଆବର ଚଉବର୍ଗ ପାଇ ॥
ଶ୍ରୀକୃଷ୍ଣ ଭକ୍ତି ହୁଏ ଜାଣ । ଲଭନ୍ତି ଶ୍ରୀକୃଷ୍ଣ ଚରଣ ॥
ସ୍ୱଜାତ ସାଧୁରେ ଦୁର୍ଲ୍ଲଭ । ସୁଜନେ ଜାଣି ସଙ୍ଗ ଲଭ ॥
ଯେଉଁ ସାଧୁଙ୍କ କଳେବର । ସ୍ୱେଦ ଜଳରେ ଜରଜର ॥
ନୟନଜଳରେ ଧଉତ । ପୁଲକ ପଟଳେ ମଣ୍ଡିତ ॥
ପ୍ରଫୁଲ୍ଲ ଅଧର ତାଙ୍କର । ଆବର ଗଦଗଦ ସ୍ୱର ॥
ନିରତେ ହୁଏ କମ୍ପମାନ । ଏ ଭାବେ ଯାହାର ଲକ୍ଷଣ ॥
ହୋଇବ ତାଙ୍କର ସଙ୍ଗତ । ତାଙ୍କ ସ୍ମରଣେ ଭକ୍ତି ଜାତ ॥
ନାମକୀର୍ତ୍ତନ ଏବେ ଶୁଣ । ଗୀତ ଗାଥାରେ ଯେତେ ନାମ ॥
ପ୍ରଭୁ ତ ଆଜ୍ଞା ଦେଇଛନ୍ତି । ଯେ ମୁଖେ ପଢ଼ନ୍ତି ଶୁଣନ୍ତି ॥
ଯେ ଅବା କରନ୍ତି ଶ୍ରବଣ । ତାଙ୍କୁ ସମାନ ନାହିଁ ଜାଣ ॥
ତହିଁର ମହିମା ଅନେକ । ଗୀତେ ମୁ ଲେଖିବ କେତେକ ॥
ମଥୁରାମଣ୍ଡଳ ବଶେଷ । ଶୁଣିବା ହୋଇଣ ହରଷ ॥

ଯମୁନା ତଟ ବୃନ୍ଦାବନ । ତହିଁ କଦମ୍ବ ବୃକ୍ଷମାନ ॥
ବିବିଧ ତରୁଲତା ମାନେ । ତହିଁରେ ଅଛନ୍ତି ସୁଘନେ ॥
ବିବିଧ କୁସୁମେ ମଞ୍ଜୁଳ । ମଧୁପ ଝଙ୍କାରେ ଚହଲ ॥
ପବନେ ସୁଗନ୍ଧ ଚହଟ । କୋକିଳ ବଚନେ ଉଚ୍ଛାଟ ॥
ଏମନ୍ତ ଯେଉଁ [illegible] । ମଥୁରା ଦୁର୍ଲ୍ଲଭ ସେ ଜାଣ ॥
କୃଷ୍ଣର ଲୀଳା ଭୂମି ସେହି । [illegible]ପ୍ରକାଶ ଅଛ ଉଇଁ ॥
ତା ଜାଣ ଦର୍ଶନ ମାତ୍ରକେ । ଭକ୍ତି ଲଭନ୍ତି ଜାଣ ସୁଖେ ॥
ତହିଁରେ କରିବଟି ସ୍ଥିତ । ଲଭିବ ଶ୍ରୀକୃଷ୍ଣଙ୍କ ଭକ୍ତି ॥
ଏ ଅଧା ଦଶ ଅଙ୍ଗ ଜାଣ । ସୁଜନେ ହୋଇଲା ସମ୍ପୂର୍ଣ୍ଣ ॥
ଏ ଜାଣ ଅଙ୍ଗ ଚଉଷଠୀ । ବଇଧୀ ସାଧନ ଯେ ଏଟି ॥
କହିଲା ଶିଶୁ ଭୀମ ଦାସ । କୃଷ୍ଣ ଚରଣେ କରି ଆଶ । ୧୦ ।

ଇତି ଶ୍ରୀ ହରିଭକ୍ତିଚନ୍ଦ୍ରୋଦୟେ ବୈଧ ସାଧନେ ଉର୍ଦ୍ଧାଦ୍ଧ
ଦଶଅଙ୍ଗ କଥନେ ନାମ ପଞ୍ଚଦଶୋଽଧ୍ୟାୟ ।

## ୧୬ଶ ଅଧ୍ୟାୟ ।

ଏଥୁ ଅନ୍ତରେ ସାବଧାନେ । ଶୁଣିମା ସାଧୁଜନମାନେ ॥
ସାଧନ ବଇଧି ଭକ୍ତିର । ଯେ ଚଉଷଠିଅଙ୍ଗ ତାର ॥
ସେ ଚଉଷଠି ଅଙ୍ଗ ଜାଣ । ଅଛନ୍ତି ଯେତେ ଫଳମାନ ॥
ପୁରାଣମାନଙ୍କେ ଅଛନ୍ତି । ଯା ଋଷିମାନେ କହିଛନ୍ତି ॥
ସେ ଫଳ ବେନି ଯେ ଲକ୍ଷଣ । ମୁଖ୍ୟ ଗଉଣ ଭାବେ ଜାଣ ॥
ମୁଖ୍ୟ ଯେ ଫଳ ଶୁଣ ତହିଁ । ଶ୍ରୀକୃଷ୍ଣ ଭକ୍ତି ସବୁ ଥାଇ ॥
ଗଉଣ ଫଳ ହାଦେ ଜାଣ । ଯହିଁରେ ଆନ ଫଳମାନ ॥
ତହିଁର ଶୁଣିମା ବିସ୍ତର । ସେ ଜାଣ କାରଣ ଭକ୍ତିର ॥
ଭକ୍ତି ହୁଅନ୍ତି ତହିଁ ଜାତ । ଏହାଦେ ଅଟଇ ଯୁଗତ ॥
ସେ ଭକ୍ତି ଅଣୁଗତ କର୍ମ । ଭକ୍ତି ବିରୋଧ ନୁହେ ଜାଣ ॥
ଭକ୍ତି ସାଧନେ ଅନୁକୂଳ । ଅଟନ୍ତି ଜାଣ ସେହୁ ଫଳ ॥
ଏ ହେନ କରି ତା ବିସ୍ତର । ସାଧନ ଅଙ୍ଗ ଛନ୍ତି କର ॥
ଏଣୁ ସକଳ ଅଙ୍ଗଙ୍କର । ଶ୍ରୀକୃଷ୍ଣ ଭକ୍ତି ମୁଖ୍ୟ ଫଳ ॥

ଅତଃର ଶୁଣିବା ବସ୍ତୁର । ସୁଜନେ ସାବଧାନ କର ॥
ଯେ ଯେ ଗଉଣ ଫଳମାନ । ଅଛନ୍ତି ଯେଉଁ ଅଙ୍ଗେ ଜାଣ ॥
ସାଧନେ ଛନ୍ତି ତାହା କହି । ସବୁର ପ୍ରବର୍ତ୍ତିବା ପାଇଁ ॥
ନାନାପ୍ରକାରେ ପ୍ରବର୍ତ୍ତିବେ । ସାଧନେ କ୍ଳେଶ ନ ଲଭିବେ ॥
ଯେ ଯେଉଁ ଅଙ୍ଗ ଇଚ୍ଛା କର । ଆନୁକ୍ରେ [redacted]ର ॥
ଅଳ୍ପ ସାଧନେ କର ମ[redacted] ଲଭିବେ କୃଷ୍ଣ ପାଦେ ଭକ୍ତି ॥
ଏଥିରେ ସଂଶୟ ନ ଘେନ । ଏ ଜାଣ ସିଦ୍ଧାନ୍ତ ବଚନ ॥
ଯେ ସେ ସାଧନ ନ କରିବେ । ସେ କର୍ମମାର୍ଗେ ହାଦେ ଥିବେ ॥
ପ୍ରଭୁ ତା ଛନ୍ତି ଆଜ୍ଞା ଦେଇ । ଶ୍ରୀ ଭାଗବତେ ଛନ୍ତି କହି ॥
ମୋ କଥା ଶ୍ରବଣ କୀର୍ତ୍ତନ । ସ୍ମରଣ ପଦ ଯେ ସେବନ ॥
ଅର୍ଚ୍ଚନ ବନ୍ଦନ ଆଦିରେ । ଯେ ଭକ୍ତି ସାଧନ ବେଭାରେ ॥
ଏଥିରେ ଶ୍ରଦ୍ଧା ପାଏ ପୁଣି । କ୍ରମେ କରିବେ ହାଦେ ପ୍ରାଣୀ ॥
ଏଥି ଉତ୍ତାରୁ ଏବେ ଶୁଣ । ସୁଜନେ ହୋଇ ସାବଧାନ ॥
ଜ୍ଞାନ ବୈରାଗ୍ୟ ଅଙ୍ଗ କରି । ଭକ୍ତିରେ ନ କଲେ ବସ୍ତୁର ॥
ସେ ଚିତ୍ତ କଠିନ କାରଣ । ଭକ୍ତି ନୁହନ୍ତି ତହିଁ ଜାଣ ॥
ଚିତ୍ତ କଠିନ ଯାର ହୁଏ । ତହିଁରେ କୃଷ୍ଣ ଭକ୍ତି ନୋହେ ॥
ଯେ କୃଷ୍ଣ ଭକ୍ତିର ବସ୍ତୁର । ସେ ଜାଣ ଅତ୍ୟନ୍ତ କୋମଳ ॥
ଜ୍ଞାନ ବୈରାଗ୍ୟ ଆଦି ଜାଣ । ଭକ୍ତିରୁ ହୁଅନ୍ତି ଏ ପୁଣ ॥
ଶ୍ରୀ ଏକାଦଶେ ଭାବଗ୍ରାହୀ । ଶ୍ରୀମୁଖେ ଛନ୍ତି ଏହା କହି ॥
ମୋର ଭକ୍ତିରୁ ଜାଣ ଜାତ । ଏ ସର୍ବେ ହୁଅନ୍ତି ଯୁଗତ ॥
ଯମ ନିୟମ ଆଦି ଯୋଗ । ବ୍ରତ ତପସ୍ୟା ତୀର୍ଥ ଭୋଗ ॥
ଜ୍ଞାନ ବୈରାଗ୍ୟ ଆଦି ଜାଣ । ଶାନ୍ତ ଶଉଚ ଦାତା ପୁଣ ॥
ଅକ୍ରୋଧ ଅହିଂସା ଆଦର । ଅକାମୀଦୟା ଅମତ୍ସର ॥
ଏ ସର୍ବ ଭକ୍ତିରୁ ହୁଅନ୍ତି । ଏମନ୍ତ ଆଜ୍ଞା ଦେଇଛନ୍ତି ॥
ଭକ୍ତି ସାଧନ ଲୋକଠାରେ । ଏଜାତ ହୁଅନ୍ତି ବେଭାରେ ॥
କୃଷ୍ଣ ଭଗତ ଜାଣ ଯେହି । ତାଙ୍କ ସହଜ ଗୁଣ ଏହି ॥
ଏ ଯେ ସାଧନ ନୋହେ ଜାଣ । ତାଙ୍କର ଛୁଏଁ ହୁନ୍ତି ପୁଣ ॥
ଏ ଘେନ ବୃଷି ଏମାନଙ୍କୁ । ଅଙ୍ଗ ନ କଲେ ସାଧନକୁ ॥

ଭକ୍ତି ସହଜ ଗୁଣ ଏହି । ଏଥୁ ଶୁଣିବା ମନ ଦେଇ ॥
ଏ ଭକ୍ତି ଏକ ଯେ ମୁଖ୍ୟାଙ୍ଗୀ । ଆବର ହୁଏ ବହୁଳାଙ୍ଗୀ ॥
ବାସନା ଅନୁସାରେ କରି । ଆଶ୍ରେ କରନ୍ତି ଅଧିକାରୀ ॥
ଏହାଙ୍କ ଅଧିକାରୀ ପୁଣ । ଏହା ଯେ ସାବଧାନେ ଶୁଣ ॥
ନାମ ଶ୍ରବଣେ ପରୀକ୍ଷିତ [illegible]ର୍ତ୍ତନେ ବ୍ୟାସଙ୍କର ସୁତ ॥
ସ୍ମରଣେ ପ୍ରହ୍ଲାଦ ଜାଣ । ପାଦ ସେବାରେ ଲକ୍ଷ୍ମୀ ପୁଣ ॥
ପୂଜା ଭକ୍ତିରେ ପୃଥୁଙ୍କର । ସ୍ତୁତି ବନ୍ଦନରେ ଅକ୍ରୂର ॥
ଦାସ୍ୟଭାବରେ ହନୁମାନ । ସଖା ଭାବରେ ଅରଜୁନ ॥
ନିବେଦନରେ ଶେଷଦେବ । ଏଭାବେ କୃଷ୍ଣ ଭକ୍ତିଭାବ ॥
ଏକ ଅଙ୍ଗକୁ ଆଶ୍ରେ କରି । ସାଧନେ ଯାଇଛନ୍ତି ତରି ॥
ଏକାଙ୍ଗୀ ବୋଲି ତାଙ୍କୁ ଜାଣ । ଯେ ବହୁଳାଙ୍ଗୀ ଭକ୍ତି ଶୁଣ ॥
ବହୁତ ଅଙ୍ଗ ଆଶ୍ରେ କରି । ସେବା କରନ୍ତେ ନରହରି ॥
ସେ ବହୁଳାଙ୍ଗୀ ଭକ୍ତି ଜାଣ । ତହିଁର ଶୁଣିବା ବଚନ ॥
ନବମସ୍କନ୍ଧେ ଛନ୍ତି କହି । ବହୁଳାଙ୍ଗୀ ଲକ୍ଷଣ ଏହି ॥
କୃଷ୍ଣ ଚରଣେ ଥାଇ ମନ । ବଚନେ କରନ୍ତି କୀର୍ତ୍ତନ ॥
ଶ୍ରବଣ କରନ୍ତି ଶ୍ରୁତିରେ । ଦଣ୍ଡପ୍ରଣାମ କରି ଶିରେ ॥
ଆବର କୃଷ୍ଣର ମନ୍ଦିର । ମାର୍ଜ୍ଜନାକରେ ଯେଣୁ କରି ॥
ଦର୍ଶନ କରନ୍ତି ନେତ୍ରରେ । ବୈଷ୍ଣବ ସ୍ପରଶ ଗାତ୍ରରେ ॥
ଆଘ୍ରାଣ କରନ୍ତି ପ୍ରସାଦ । କ୍ଷେତ୍ରକୁ ଗମେ ତାଙ୍କ ପାଦ ॥
କାମନା କରେ ଦାସ୍ୟଭାବ । ଏଭାବେ ଯେବଣ ବୈଷ୍ଣବ ॥
ଭକ୍ତି ସାଧନ ଜାଣ କରି । ସେ ବହୁଳାଙ୍ଗୀ ଅଧିକାରୀ ॥
ଏ ହାବେ ବଇଧୀ ସାଧନ । ବର୍ଗର ହୋଇଲା ସମ୍ପୂର୍ଣ୍ଣ ॥
କୃଷ୍ଣ ଚରଣେ କରି ଆଶ । କହିଲା ଶିଶୁ ଭୀମ ଦାସ ॥ ୬୪ ॥

ଇତି ଶ୍ରୀହରିଭକ୍ତିଚନ୍ଦ୍ରୋଦୟେ ବୈଧସାଧନ ଭକ୍ତି ବର୍ଗର
ସମ୍ପୂର୍ଣ୍ଣେ ନାମ ଷୋଡ଼ଶୋଽଧ୍ୟାୟଃ ।

## ୧୭ଶ ଅଧ୍ୟାୟ ।

### ( ରାଗାନୁଗା ସାଧନ, ରାଗାତ୍ମିକ ଲକ୍ଷଣ । )

ଏଥିଉତ୍ତାରୁ ସାବଧାନେ । ଶୁଣିବା ସାଧୁଜନମାନେ ॥
ଶ୍ରୀକୃଷ୍ଣ ସାଧନ ଭକ୍ତିରେ । [illegible] ଦେନ ପ୍ରକାର ବେଦରେ ॥
ବଇଧି ରାଗାନୁଗା ବୋଲି । ଯାହା ଆଦ୍ୟରେ କହିଥିଲି ॥
ଯେ ତହିଁ ବଇଧି ସାଧନ । ତାହା ତ କଲି ସାବଧାନ ॥
ଏବେ ଏ ରାଗାନୁଗା ଭକ୍ତି । ଶୁଣିବା ସ୍ଥିର କର ମତି ॥
ପୁରାଣମାନଙ୍କ ଗୁପତ । ଯେ ସେ ଭକ୍ତିର ମୂଳ ତତ୍ତ୍ୱ ॥
ସାଧନମାନଙ୍କର ସାର । ଅଟଇ ଏଥିର ବିସ୍ତର ॥
କୃଷ୍ଣରେ ଅତ୍ୟନ୍ତ ନିଧନ । ଅଟଇ ଏଥିର ସାଧନ ॥
ତାହା ଜଗତ ହିତ ପାଇଁ । ଭାଷା ଗୀତରେ କହିବଇଁ ॥
ଏ ଯେନିକର ସାଧୁଜନ । ଏ ମୋର ଦୋଷ ଯେ ନ ଘେନ ॥
ଯେ ରାଗାନୁଗା ସାଧନର । ବିସ୍ତର ସାବଧାନ କର ॥
ସେ ରାଗାନୁଗା ଭକ୍ତି ଜାଣ । ଷଡ଼ ପ୍ରକାରେ ହୁଏ ପୁଣ ॥
ପ୍ରଥମେ ରାଗାତ୍ମିକା ହୋଇ । ରାଗ ପ୍ରଧାନ ଜାଣ ତହିଁ ॥
କୃଷ୍ଣରେ ରାଗାତ୍ମିକା ଜାଣ । ସେ ଯେନି ରାଗାତ୍ମିକ ନାମ ॥
ତହିଁକ ଅନୁଗତ ଯେହି । ତାହାକୁ ରାଗାନୁଗା କହି ॥
କାମ ସମ୍ପଦେ ଯେ ଭଜନ । ତାହାକୁ କାମରୂପା ଜାଣ ॥
ତାହାର ଅନୁଗତ ଯେହି । ଜାଣିବ କାମାନୁଗା ସେହି ॥
ସମ୍ବନ୍ଧ ଭାବେ ଯେ ବିସ୍ତର । ସମ୍ବନ୍ଧରୂପା ନାମ ତାର ॥
ତାହାଙ୍କ ଅନୁଗତ ଯେହି । ସମ୍ବନ୍ଧାନୁଗା ତାକୁ କହି ॥
ଏଭାବେ ଷଡ଼ଅଙ୍ଗ ଜାଣ । ରାଗାନୁଗାର ଯେ ପ୍ରମାଣ ॥
ଏ ଷଡ଼ ଅଙ୍ଗଙ୍କର ତହିଁ । ରାଗ ପ୍ରଧାନ ସବୁଠାଇଁ ॥
ଯାର ଯେମନ୍ତ ଅନୁରାଗ । କୃଷ୍ଣ ଚରଣେ ହୁଏ ବେଗ ॥
ତାଙ୍କର ସେହି କ୍ରମେ ଜାଣ । ସିଦ୍ଧ ହୁଅନ୍ତି ଏହୁ ପୁଣ ॥
ତା ଏବେ ଏକ ଏକ କରି । ସୁଜନେ ଶୁଣିବା ବିସ୍ତରି ॥
ପ୍ରଥମେ ରାଗାତ୍ମିକା ଶୁଣ । ରାଗ ପ୍ରଧାନ ତହିଁ ଜାଣ ॥

କୃଷ୍ଣ ଚରଣେ ଅନୁରାଗ । ଯହିଁରେ ଅତ୍ୟନ୍ତ ସଂଯୋଗ ॥
ତାହା ଇଚ୍ଛାଏ ଥାଇ ହୋଇ । ଯା ସ୍ୱାଭାବିକ ରାଗ କହି ॥
ତହିଁର ଗୁଣ ଅଧିକାରୀ । ନିତ୍ୟ ଯେ ଶିକ୍ଷା ଗୋପନାରୀ ॥
ଯେ ନିତ୍ୟଗୋଲୋକ ମଣ୍ଡଳେ । ଅଛନ୍ତି କୃଷ୍ଣ ସନ୍ନିଧିରେ ॥
ମୁକୁନ୍ଦ ଭକ୍ତ ଜାଣ ସେହି । ନିତ୍ୟ ହୋଇଣ ଛନ୍ତି ରହି ॥
ନିରତେ କୃଷ୍ଣର ସେବାରେ । ଅଛନ୍ତି ଯନ୍ତ୍ରର ବଶ୍ୟରେ ॥
ଯେ ଯାହା ସେବା ସେ ଆଚାର । କୃଷ୍ଣ ଚରଣେ ହାଦେ କର ॥
ସପ୍ରେମ ନୟନେ ଅନାଇ । ମନ ଲୋଚନ କୃଷ୍ଣେ ଦେଇ ॥
କୃଷ୍ଣରୁ ନ ଜାଣନ୍ତି ଆନ । କୃଷ୍ଣ ରାଗରେ ତାଙ୍କ ପ୍ରାଣ ॥
ଈଶ୍ୱର ଭାବେ ଅନୁରାଗ । ନିରତେ କରଣ ସଂଯୋଗ ॥
ସେ ଦାସୀ ଭାବର ବଶ୍ୟରେ । ସେବା କରନ୍ତି ନିରନ୍ତରେ ॥
ସେ ରାଗ ବେଳୁ ବେଳୁ ପୁଣ । ବଢ଼ଇ ନୁହଇ ନିଉନ ॥
ବ୍ରହ୍ମଆନନ୍ଦ ସୁଖମାନ । କିଞ୍ଚିତ ପ୍ରାୟେ ତାଙ୍କୁ ଜାଣ ॥
ପରମାନନ୍ଦ ପ୍ରେମ ସୁଖ । ଭାବରେ ହୋଇ ସେ ଉତ୍ସୁକ ॥
କୋଟୀ ସଂହାରମାନ ଗଲେ । ନିମିଷ ନୋହେ ତାଙ୍କୁ ଭଲେ ॥
କୃଷ୍ଣର ସନ୍ନିଧିଂ ଅନ୍ତର । କ୍ଷଣେହେଁ ନାହିଁ ତାହାଙ୍କର ॥
ପ୍ରଭୁଙ୍କୁ କ୍ଷଣେ ନ ଛାଡ଼ନ୍ତି । ଯହିଁ ଶ୍ରୀକୃଷ୍ଣ ତହିଁ ଥାନ୍ତି ॥
ଯେ ସେ ଶ୍ରୀକୃଷ୍ଣ ସଙ୍ଗତରେ । ଜନମ ଲଭିଲେ ଗୋପରେ ॥
ଗୋକୁଳବାସିଗଣ ଭୁଲେ । ପ୍ରଭୁଙ୍କ ସଙ୍ଗତେ ରମିଲେ ॥
ପ୍ରଭୁଙ୍କଠାରେ ଅନୁରାଗ । ସେହି ଯେ ପ୍ରକାରେ ସଂଯୋଗ ॥
ସେହି ପ୍ରକାରେ ତାଙ୍କ ଜ୍ଞାନ । ତହିଁରୁ ନାହିଁ ଜାଣ ଆନ ॥
ବହୁତ କାଳ ଗୋପେ ଥିଲେ । ଅନେକ ଲୀଳାମାନ କଲେ ॥
ପୁଣି ଶ୍ରୀକୃଷ୍ଣ ସଙ୍ଗତରେ । ନିତ୍ୟ ଗୋଲୋକେ ବିଜେ କଲେ ॥
ଯେ ସେ ଶ୍ରୀକୃଷ୍ଣ ଅନୁରାଗୀ । ନିରତେ ଭଗବାନ ସଙ୍ଗୀ ॥
ସେ ଏ ଭକ୍ତିର ଅଧିକାରୀ । ସେ ନିତ୍ୟସିଦ୍ଧା ଗୋପନାରୀ ॥
ଏ ଭକ୍ତି ତାଙ୍କ ବିନୁ ଆନ । କାହାର ନାହିଁ ନିଷ୍ଠେ ଜାଣ ॥
ଯେଉଁ ଭକ୍ତିକି ନିରନ୍ତରେ । ନାରଦ ଇଚ୍ଛନ୍ତି ମନରେ ॥
ଉଦ୍ଧବ ଅକ୍ରୂର ଆଦର । ଚିନ୍ତା କରନ୍ତି ନିରନ୍ତର ॥

ମନୁଷ୍ୟ ମାନବକେଣ ଜାଣ । କାହାର ହୋଇବ ସେ ଗୁଣ ॥
କେବଳ ସାଧନ ବର୍ତ୍ମରେ । କହିଲି ଭକ୍ତି ସଙ୍ଗତରେ ॥
ଏହା ଯେ ନ କହିଲେ ପୁଣ । ସାଧନ ହୁଅନ୍ତା ଅଙ୍ଗହୀନ ॥
ଗ୍ରନ୍ଥ ଯେ ନୁହନ୍ତା ସଙ୍ଗତ । ଏ ଯେଣୁ କହିଲି ଯୁଗତ ॥
ଆବର ରାଗାନୁଗା ଭକ୍ତି । ତହିଁର ନୁହନ୍ତ ସଙ୍ଗତି ॥
ଏହି ଭକ୍ତିକି ଅନୁଗତ । ରାଗାନୁଗାହି ଯେ ଯୁଗତ ॥
ଏ ଯେଣୁ କହିଲଇଁ ଜାଣ । ଗୁଣାତ୍ମୀକାର ଏ ଲକ୍ଷଣ ॥
ନିତ୍ୟେ ସାଧୁଣ ଚରଣରେ । ଭୀମ ଭଜଇ ନିରନ୍ତରେ ॥୭୯॥

ଇତି ଶ୍ରୀ ହରିଭକ୍ତିଚନ୍ଦ୍ରୋଦୟେ ରାଗାନୁଗା ସାଧନେ
ରାଗାତ୍ମିକ ଲକ୍ଷଣୋ ନାମ ସପ୍ତଦଶୋଽଧ୍ୟାୟଃ ।

---

## ୧୮ଶ ଅଧ୍ୟାୟ ।

### ( ରାଗାନୁଗା ଭକ୍ତି । )

ଏଥୁ ଉତ୍ତାରୁ ଏବେ ଶୁଣ । ସାବଧାନରେ ସାଧୁଜନ ॥
ସାଧନେ ରାଗାନୁଗା ଭକ୍ତି । ବର୍ତ୍ମରେ ଶୁଣ ଦେଇ ମତି ॥
ଏ ଜାଣଁ ଅତ୍ୟନ୍ତ ଗୁପତ । ଯେ ସେ ଭକ୍ତିର ଶୁଣି ତତ୍ତ୍ୱ ॥
ଗୁରୁ ବଚନ ବିନୁ ଆନ । ଜାଣି ନୁହଇ ଏହା ଜାଣ ॥
ଉପଦେଶର ଏ ବର୍ତ୍ମର । ସାଧନମାନଙ୍କର ସାର ॥
ଏଥିରେ ପ୍ରଭୁ ଭଗବାନ । ବଶ ହୁଅନ୍ତି ବେଗେ ଜାଣ ॥
କୃଷ୍ଣଙ୍କ ଅତ୍ୟନ୍ତ ଯେ ପ୍ରୀତି । ଅଟଇ ରାଗାନୁଗା ଭକ୍ତି ॥
ତହିଁର ଶୁଣିବା ବିଧାନ । ସୁଜନେ ହୋଇ ସାବଧାନ ॥
ରାଗାତ୍ମିକାକୁ ଅନୁଗତ । ଏଥିର ସାଧନ ଯୁଗତ ॥
ସେ ଯେଣୁ ରାଗାନୁଗା ନାମ । ଯେ ଜାଣ ସାଧନ ଉତ୍ତମ ॥
ଯେ ରାଗାତ୍ମିକା ଅଧିକାରୀ । ନିତ୍ୟ ଯେ ସିଦ୍ଧା ଗୋପନାରୀ ॥
ତାଙ୍କ ଚରିତ ଶୁଣ ଚିତ୍ତେ । ଭାବନା କର ତା ଯୁଗତେ ॥
ସେହି ଭାବରେ ଲୋଭୀ ହୋଇ । ମନ କର୍ତ୍ତବ୍ୟ ତହିଁ ଦେଇ ॥
ସେ ନ ଜାଣନ୍ତି ଶାସ୍ତ୍ର ରୀତି । କେବଳ ସେହିଭାବେ ମତି ॥
ବେଳକୁ ବେଳ ଯେ ଉଦ୍ଧତ । ସେହି ରାଗରେ ହୁଏ ଚିତ୍ତ ॥

ଏମନ୍ତ ସାଧକର ଚିତ୍ତେ । ଶ୍ରଦ୍ଧା ଯେ ହୁଅନ୍ତେ ଯୁଗତେ ॥
ଆପଣା ଦେହ ଶୁଦ୍ଧ କରି । ଆବର ଗୋପୀ ବେଶ ଧରି ॥
ଗନ୍ଧ ଚନ୍ଦନେ ସୁବାସିତ । ପବିତ୍ର କରି ନିଜ ଗାତ୍ର ॥
ଏକାକୀ ହୋଇଣ ବିଜନେ । ବସି ଆନନ୍ଦ ପ୍ରେମ ମନେ ॥
ଇନ୍ଦ୍ରିୟମାନଙ୍କୁ ନିରୋଧି । ନିର୍ମ୍ମଳ କରି ନିଜ ବୁଦ୍ଧି ॥
ମନ ଲୋଚନ ଏକ କରି । ଗୋପୀଙ୍କ ରୂପ ଅନୁସରି ॥
ସେହି ଗୋପୀଙ୍କି ମନେ ଧାୟି । ଧ୍ୟାନରେ ତଦାକାର ହୋଇ ॥
ତାଙ୍କ ଆକାର ଧରି କରି । ପ୍ରବେଶ ହୁଏ ନିତ୍ୟସ୍ଥଳୀ ॥
ସେହି ଗୋପୀଙ୍କ ସଙ୍ଗତରେ । ରହନ୍ତି କୃଷ୍ଣ ସନ୍ନିଧିରେ ॥
ସେହି ଗୋପୀଙ୍କ ସେବାମାନ । କରନ୍ତି ଶ୍ରୀକୃଷ୍ଣ ଚରଣ ॥
ପ୍ରଭୁଙ୍କୁ ପ୍ରଭୁଭାବେ ହେଜ । ଦାସୀ ଭାବରେ ଏ ଯେ ମଜ୍ଜି ॥
ଏଭାବେ ଶ୍ରୀକୃଷ୍ଣ ଚରଣେ । ସେବା କରନ୍ତି ଅନୁକ୍ଷଣେ ॥
ଯେ ପରିଚର୍ଯ୍ୟାଟି ଅଙ୍ଗରେ । ସେଭାବେ ସେବନ୍ତି ସ୍ଥାମୁରେ ॥
ସେହିଭାବରେ ସେ ଯେ ମିଶେ । ତହିଁରୁ ବାହୁଡ଼ି ନ ଆସେ ॥
ତଥାପି ଆନ ଚେଷ୍ଟାକଲେ । ମନ ତହିଁରେ ଥାଇ ଭଲେ ॥
ତହୁଁ ବାହାର ନୁହେ ମନ । ତହିଁର ଦୃଷ୍ଟାନ୍ତ ଯେ ଶୁଣ ॥
ଯେମନ୍ତ କ୍ଷୁଦ୍ର ନଦୀ ଜଳ । ବଡ଼ ନଦୀରେ ହୁଏ ମେଳ ॥
ସେ ନଦୀ ଜଳରେ ମିଶନ୍ତି । ସେ ସଙ୍ଗେ ସମୁଦ୍ରେ ପଶନ୍ତି ॥
ସେ ଜଳ ସମୁଦ୍ର ଜଳ ସେ । ଅଭିନ୍ନ ହୋଇ ଜାଣ ମିଶେ ॥
ସମୁଦ୍ର ରସକୁ ଘେନନ୍ତି । କେହି ନିବାରି ନ ପାରନ୍ତି ॥
ସେହି ପ୍ରକାର ସେହୁ ଜାଣ । ଯେ ପୁଣ ସାଧକର ମନ ॥
ସେ ନିତ୍ୟବାସିଙ୍କ ସଙ୍ଗରେ । ମିଶନ୍ତି ଯାଇଣ ବେଭାରେ ॥
ତାଙ୍କ ଭାବରେ ମିଶିକରି । କୃଷ୍ଣ ଚରଣେ ସେବା କରି ॥
ସେ କୃଷ୍ଣ ସେବାରେଟି ମଜ୍ଜି । ନିରତେ କୃଷ୍ଣ ପାଦ ଭଜି ॥
ସେହି ଭାବରେ ସେ ଯେ ରସେ । ବେଭାରେ ବାହୁଡ଼ି ନ ଆସେ ॥
ସେ ଜାଣ ଯେତେକାଳ ଥାନ୍ତି । ଏହିଭାବରେ କାଳ ନିଅନ୍ତି ॥
ସେ ପୁଣି ସେ ଦେହର ଅନ୍ତେ । ସେହି ଭାବନା ଧରେ ଚିତ୍ତେ ॥
ପାର୍ଥିବ ଦେହକୁ ତ୍ୟଜନ୍ତି । ଗୋପୀକା ଦେହ ସେ ଲଭନ୍ତି

ଯେ ନିତ୍ୟବାସୀଙ୍କ ସଙ୍ଗରେ । ରହନ୍ତି ଶ୍ରୀକୃଷ୍ଣ ସେବାରେ ॥
ଭକ୍ତି ରତି ପ୍ରଭୁକୁଁ କରି । ଇତର ଲୋକହିଁ ଆଚରି ॥
ଇସିତେ ଶ୍ରୀକୃଷ୍ଣଙ୍କୁ ପାନ୍ତି । ଏଥି ନ କର କେହି ଭ୍ରାନ୍ତି ॥
ଏଥକୁ ବହୁତ ବଚନ । କହିଅଛନ୍ତି ହ୍ୱାଦେ ଜାଣ ॥
ଆଦିପୁରାଣେ ଅଛି ପୁଣି । ପ୍ରଥମେ ଶ୍ରୀମୁଖ ଯେ ବାଣୀ ॥
ଗୋପୀକା ଭାବେ ଯେଉଁ ଭକ୍ତ । ମୋ ପାଦେ ସେବନ୍ତି ଯୁଗତ ॥
ତାହାଙ୍କୁ ବେଗ ମୁହିଁ ବଶ । ହୁଅଇ ହୋଇଣ ସନ୍ତୋଷ ॥
ଏ ମୋର ସତ୍ୟ ଯେ ବଚନ । ବୋଲିଣ କହିଲେ ଅର୍ଜୁନ ॥
ଆହୁରି ଶ୍ରୀଏକାଦଶରେ । ସନ୍ତୋଷେ ଉଦ୍ଧବ ଆଗରେ ॥
କହିଅଛନ୍ତି ଦେବରାଜ । ଉଦ୍ଧବ ଗୋପୀଭାବେ ଭଜ ॥
ଯେ ଭାବେ ଅତି ପ୍ରୀତି ମୋର । ବେଗେ ମୁଁ ବଶ ତାହାଙ୍କର ॥
ଏ ଭାବେ ଶ୍ରୀମୁଖ ବଚନ । ଅଛଇ ଶୁଣ ସାଧୁଜନ ॥
ଏକାମ୍ରପୁରାଣ ବାଣୀ । ଯେ ଅଛି ଶୁଣିବା ତା ପୁଣି ॥
ଶ୍ରୀବୃନ୍ଦାବନପତିଙ୍କର । ଭକ୍ତି ମହିମା ଅଗୋଚର ॥
ଯେ ଗୋପୀଭାବରେ ଭଜନ୍ତି । ପୁରୁଷ ଦେହ ସେ ତେଜନ୍ତି ॥
ଧରନ୍ତି ଯୁବତୀ ଆକାର । ଖେଳନ୍ତି ଶ୍ରୀକୃଷ୍ଣ ପଯ୍ୟର ॥
ଆହୁରି ମହାକୂର୍ମ ବାଣୀ । ଯେ ଅଛି ଶୁଣ ପରମାଣି ॥
ଅଗ୍ନିକ ପୁତ୍ରି ମୁନି ଯେହି । ତପସ୍ୟା କଲେ ବନେ ରହି ॥
ପ୍ରଭୁଙ୍କୁ ପତିଭାବେ ବରି । ନିରତେ ଚିନ୍ତା ଯେ ବସ୍ତୁରି ॥
ସେ ସେହି ତପର ଅନ୍ତରେ । ପୁରୁଷତନୁ ତ୍ୟଜି ଖରେ ॥
ହୋଇଲେ କୃଷ୍ଣ ପାଟରାଣୀ । ଏମାନ ଅଛି କି ନଶୁଣି ॥
ଏହି ଭାବରେ ସାଧିକରି । ବହୁତ ଯାଇଛନ୍ତି ତରି ॥
ସାଧନସିଦ୍ଧା ଜାଣ ସେହି । ସାଧନେ ନଷ୍ଟେ ସିଦ୍ଧ ହୋଇ ॥
ଯେ ନିତ୍ୟସିଦ୍ଧାଙ୍କ ମେଳରେ । ଭଜନ୍ତି ଯାଇଁ ଗୋଲୋକରେ ॥
ଏଣୁ ଏ ସାଧନ ଯୁଗତ । ଅଟଇ ଅତ୍ୟନ୍ତ ଗୁପତ ॥
କୃଷ୍ଣ ଚରଣେ ଦେଇ ମନ । କହଇ ଦାସ ଭୀମସେନ ॥
ଭାଷା ଗୀତରେ ଭକ୍ତିରସ । କହଇ ଶିଶୁ ଭୀମଦାସ ॥ ୭୦ ॥

ଇତି ଶ୍ରୀହରିଭକ୍ତିଚନ୍ଦ୍ରୋଦୟେ ରାଗାନୁରାଗ ସାଧନେ ରାଗାନୁଗା ଭକ୍ତି ଲକ୍ଷଣୋ ନାମ ଅଷ୍ଟାଦଶୋଽଧ୍ୟାୟଃ ।

୧୯ଶ ଅଧ୍ୟାୟଃ ।

ସୁଜନେ ସାବଧାନେ ଶୁଣ । କାମରୂପାର ଯେ ଲକ୍ଷଣ ॥
ତହିଁର ଯେତେକ ବର୍ଣ୍ଣିର । କହଇ ସାବଧାନ କର ॥
କାମ ଦୃଷ୍ଟିରେ ଦେଇ ମତି । ଶ୍ରୀକୃଷ୍ଣ ସଙ୍ଗେ ଯେ ରମନ୍ତି ॥
ତାଙ୍କର ନୋହେ ପ୍ରଭୁ ବୁଦ୍ଧି । ରତିରେ ହରାଇଲୁ ବୁଦ୍ଧି ॥
କାମରେ ହୁଏ ଉନମତ୍ତ । ରମନ୍ତି ଶ୍ରୀକୃଷ୍ଣ ସଙ୍ଗତ ॥
ଅନ୍ତେ ସେ ନିତ୍ୟଲୋକେ ଯାନ୍ତି । ଏହି ଯେ କାମରୂପା ଭକ୍ତି ॥
ତହିଁରେ ଶୁଣ ଅଧିକାରୀ । ଗୋକୁଳବାସୀ ବ୍ରଜନାରୀ ॥
କୃଷ୍ଣଙ୍କୁ ଦେଖି ଗୋପପୁରେ । ମତ୍ତ ହୋଇଲେ କାମଶରେ ॥
ତାତ ଜନନୀ ଭ୍ରାତାମାନ । ଶାଶୁ ଶ୍ୱଶୁର ଗୁରୁଜନ ॥
ପତି ସଦନ ଆଦି କରି । ସମସ୍ତ ତେଜିଲେ ସୁନ୍ଦରୀ ॥
ସେ ନ ଜାଣିଲେ ବେନି କୁଳ । ଲାଜ ବେଭାର କଲେ ଦୂର ॥
ଈଶ୍ୱର ବୋଲି ନ ଜାଣିଲେ । ଜାର ବୁଦ୍ଧିରେ ଚିତ୍ତ ଦେଲେ ॥
ନିରତେ କୃଷ୍ଣ ସଙ୍ଗତରେ । ବୁଲିଲେ ଗହନ ବନରେ ॥
ନିଶି ଦିବସ ନ ଜାଣିଲେ । ନିରତ ଶ୍ରୀକୃଷ୍ଣର ତୁଲେ ॥
ନାନାପ୍ରକାର ଲୀଳାମାନ । କଲେ ଶ୍ରୀକୃଷ୍ଣ ସଙ୍ଗତେଣ ॥
ବିବିଧବନ୍ଧେ କଲେ ରତି । କାମେ ଉତ୍ସୁକ କରି ମତି ॥
ନିରତେ ଶୃଙ୍ଗାରେ ମଜ୍ଜିଲେ । ଉନ୍ମତ ହୋଇଣ ଭଜିଲେ ॥
କୃଷ୍ଣଙ୍କୁ ଜାର ଭାବେ ଭଜି । ବଟପିନାରୀ ଭାବେ ମଜ୍ଜି ॥
କାମ ସମ୍ପଦେ ହୋଇ ମତ୍ତ । ପ୍ରେମରେ ହୋଇଲେ ଉନ୍ମତ ॥
ଶ୍ରୀକୃଷ୍ଣ ବିନୁ ଆନ ରସ । ମନରେ ନୋହିଲା ପ୍ରବେଶ ॥
କହିଲେ କୃଷ୍ଣ ଗୁଣ କହେ । ସର୍ବ ଦେଖିଲେ କୃଷ୍ଣମୟେ ॥
ରାତ୍ରରେ ଦେଖନ୍ତି ସ୍ୱପନ । ଶ୍ରୀକୃଷ୍ଣ ସଙ୍ଗ ଲୀଳାମାନ ॥
ସେ ଜାଣଯେତେ କାଳ ଥିଲେ । ଏହି ଭାବରେ ମନ ଦେଲେ ॥
ସେ ପୁଣି ଜୀବନର ଅନ୍ତେ । ଶ୍ରୀକୃଷ୍ଣ ସଙ୍ଗତେ ଯୁଗତେ ॥
ଯେ ନିତ୍ୟବାସିଙ୍କର ତୁଲେ । ନିତ୍ୟଗୋଲୋକେ ବିଜେ କଲେ ॥
ଏ କଥା ବିଦିତ ଜଗତେ । ସଂଶୟ ନ ବିଚାର ଚିତ୍ତେ ॥
ପୁରାଣମାନଙ୍କରେ ପୁଣ । କହିଅଛନ୍ତି ଋଷିଗଣ ॥

କାମ ସମୟେ ଦେଇ ମତି । ସେ ଗୋପପୁରର ଯୁବତୀ ॥
କୃଷ୍ଣରେ ଜାର ବୁଦ୍ଧି କରି । ହେଲେ ସଂସାରୁ ଗଲେ ତରି ॥
ଏ ପୁଣ କାମରୂପା ଭକ୍ତି । ସେ ଗୋପୀମାନେ କରିଛନ୍ତି ॥
ତାଙ୍କ ବାହାରେ ପୁଣ ଆନ । କାହାର ନାହିଁ ପ୍ରତେ ଜାଣ ॥
କି ଅବା ଅଛି ଯହିଁ ତହିଁ । ସମଗ୍ର କହିତ ନୁହଇ ॥
ନାନାପ୍ରକାରେ ଲୀଳା କରି । କାହାକୁ ଥିବେଟି ଉଦ୍ଧରି ॥
ଏ ଯେନ ତାଙ୍କର ବିଗ୍ରହ । କାହାର ନୋହେ ନା ଗୋଚର
କେବଳ ମାତର ବିଗ୍ରହରେ । କହି ସେ ଗୋପୀଙ୍କବିଗ୍ରହରେ ॥
କୁବୁଜା କରି ଏହି ଭକ୍ତି । ତରିଲା ବୋଲି କହିଛନ୍ତି ॥
କୃଷ୍ଣଙ୍କୁ ଦେଖିଣ ସନ୍ଧରେ ।· ବଶ ହୋଇଲେ କାମଶରେ ॥
ସମ୍ଭୋଗ ଇଚ୍ଛା ଚିତ୍ତେ ଧରି । ଭବରୁ ଗଲେ ସେହି ତରି ॥
ଏ କାମରୂପା ଭକ୍ତି ଜାଣ । ସୁଜନେ କର ସାବଧାନ ॥
କୃଷ୍ଣଚରଣେ ଦେଇ ମତି । କହଇ ଭୀମ ହରିଭକ୍ତି ॥

ଇତି ଶ୍ରୀ ହରିଭକ୍ତିଚନ୍ଦ୍ରୋଦୟେ ରାଗାନୁଗାସାଧନେ କାମରୂପା
ବିଗ୍ରହ ଲକ୍ଷଣୋ ନାମ ଊନବିଂଶୋଽଧ୍ୟାୟଃ ।

---

## ୨୦ଶ ଅଧ୍ୟାୟ ।

ସୁଜନେ ସାବଧାନ କର । କାମରୂପାର ଯେ ବିଗ୍ରହ ॥
କାମରୂପାର ଅନୁଗତ । ଏହା ଯେ ଅଟଇ ଯୁଗତ ॥
ସେ ହେଳ କାମାନୁଗା ନାମ । ଏ ଜାଣ ସାଧନ ଉତ୍ତମ ॥
ଯେ କାମରୂପା ଅଧିକାରୀ । ଅଟନ୍ତି ଗୋପପୁର ନାରୀ ॥
ତାଙ୍କ ଚରିତମାନ ଶୁଣି । ସେ ଭାବମାନ ମନେ ଗୁଣି ॥
ସେହି ଭାବରେ ଲୋଭୀ ହୋନ୍ତି । ପ୍ରଭୁଙ୍କୁ ଭାବନା କରନ୍ତି ॥
ପ୍ରଭୁଙ୍କ ଶ୍ରୀମୁଖ ସୁନ୍ଦର । ଚିତ୍ତେ ଚିନ୍ତନ୍ତି ନିରନ୍ତର ॥
କୃଷ୍ଣର ଯଶ ଗୁଣମାନ । ଶୁଣି ଉଚ୍ଛନ୍ନ କରେ ମନ ॥
କୃଷ୍ଣର ଶ୍ରୀମୂର୍ତ୍ତି ମାଧୁରୀ । ଆବର ଦରଶନ କରି ॥
ସାଧକ ସାତ୍ତ୍ୱିକ ବେଶରେ । ବଶ ହୁଅନ୍ତି କୃଷ୍ଣଠାରେ ॥
ସେ ଜାଣ ଯେତେକାଳ ଥାନ୍ତି । ସେହି ଭାବରେ ଦେଇ ମତି ॥

ଈଶ୍ୱର ବୁଦ୍ଧି ଯାଇ ଯାର । ସାତ୍ତ୍ୱିକେ ହୁଅନ୍ତି କାତର ॥
କାମ ସ୍ୱଭାବେ ବଶ ହୋନ୍ତି । ସମ୍ଭୋଗ ଇଚ୍ଛା ସେ କରନ୍ତି ॥
କୃଷ୍ଣଙ୍କୁ ପତି ଚିନ୍ତା କରି । ନିଜ ମାନସେ ତାଙ୍କୁ ଧରି ॥
ଯେ ନିଜ ଯୁବତୀ ପ୍ରକାରେ । ରତି ଉପୁଜେ କୃଷ୍ଣଠାରେ ॥
କାମ ବିକାରେ ହୁଏ ମତ୍ତ । କୃଷ୍ଣ ଚରଣେ ଉନମତ୍ତ ॥
ଲୀଳା ଇଚ୍ଛନ୍ତି ନିରନ୍ତରେ । ଚିତ୍ତ ନିବେଶି କୃଷ୍ଣଠାରେ ॥
ସେ ପୁଣି ସେ ଦେହର ଅନ୍ତେ । ଯୁବତୀ ହୁଅନ୍ତି ଯୁଗତେ ॥
ଧରି ନିର୍ମଳ ଗୃରୁ ଅଙ୍ଗ । ଲଭନ୍ତି କୃଷ୍ଣ ଅଙ୍ଗ ସଙ୍ଗ ॥
ନାନାପ୍ରକାରେ କ୍ରୀଡ଼ା କରେ । ନିରତେ କୃଷ୍ଣର ସଙ୍ଗରେ ॥
ସେ ପୁଣି ସେ ଦେହର ଅନ୍ତେ । ନିତ୍ୟକୁ ଚଳନ୍ତି ଯୁଗତେ ॥
ଏମନ୍ତ ଭାବେ ଯେ ସାଧନ । ତାହାକୁ କାମାନୁଗା ଜାଣ ॥
ଏଥି ସଂଶୟ ନୋହି ଚିତ୍ତ । ଶୁଣିମା ଏଥିର ସିଦ୍ଧାନ୍ତ ॥
ପୂର୍ବେ ଦଣ୍ଡକବାସିମାନେ । ଥିଲେ ଯେତେକ ଋଷିଗଣେ ॥
ରଘୁନାଥଙ୍କୁ ଦେଖିକରି । ମଦନଶରେ ହେଲେ ଘାରି ॥
ନିଜ ଧଇର୍ଯ୍ୟ କଲେ ଦୂର । ସାତ୍ତ୍ୱିକେ ହୋଇଲେ କାତର ॥
ପୁରୁଷ ତନୁ ବହି କରି । ଚେତନା ନୋହିଲା କାହାରି ॥
ଈଶ୍ୱର ଜ୍ଞାନହିଁ ନୋହିଲା । ଯେ ନିଜ ଚେତନା ହଜିଲା ॥
ସୁରତ ଇଚ୍ଛା ମନେ କଲେ । ନାନାପ୍ରକାରେ ଲୀଳା କଲେ ॥
କେତେକ ମାନ ବାସନାରେ । ସେ ପୁଣି ଦେହର ଅନ୍ତରେ ॥
ପୁରୁଷ ତନୁ ଛାଡ଼ିକରି । ଗୋପରେ ହୋଇଲେ ଅଭୀରୀ ।
ସେ ପୁଣ ପ୍ରଭୁଙ୍କର ତୁଲେ । ନାନାପ୍ରକାର କ୍ରୀଡ଼ା କଲେ ॥
ଯେ ସେ ନିତ୍ୟର ଲୀଳାମାନ । ତା ଗୋପପୁରେ କଲେ ଜାଣ ॥
ସେ ପୁଣି ସେ ଦେହର ଅନ୍ତେ । ନିତ୍ୟକୁ ଚଳିଲେ ଯୁଗତେ ॥
ଏ କଥା ନୁହେ ଆନ ଜାଣ । ଏ ରାମାୟଣର ବଚନ ॥
ଏ ବାଲ୍ମୀକି ଋଷି ବାଣୀ । ତହିଁକି ସଂଶୟ କି ପୁଣି ॥
ଏ ଯେଣି କୃଷ୍ଣର ଭଜନ । ନାନାପ୍ରକାର ଅଛି ଜାଣ ॥
କେବଳ ମାର୍ଗ ଅନୁସରି । ଭଜିବ ପ୍ରଭୁ ବେଣୁଧାରୀ ॥
କୃଷ୍ଣ ଚରଣରେ ମାନସ । ଦେଇ କହଇ ଭୀମ ଦାସ ॥

ଇତି ଶ୍ରୀ ହରିଭକ୍ତିଚନ୍ଦ୍ରୋଦୟେ ରାଗାନୁଗା ସାଧନେ କାମାନୁଗା ଲକ୍ଷଣ ବର୍ଣ୍ଣନେ ନାମ ବିଂଶୋଽଧ୍ୟାୟଃ ।

## ୨୧ଶ ଅଧ୍ୟାୟ ।

ସ୍ୱଜନେ ଶୁଣ ସାଧୁ କଥା । ଶ୍ରୀକୃଷ୍ଣ ଭକ୍ତିର ବ୍ୟବସ୍ଥା ॥
ସମ୍ବନ୍ଧ ରୂପା ଭକ୍ତି ଯେହ । ଶୁଣିମା ସାବଧାନ ହୋଇ ॥
କୃଷ୍ଣ ଠାବରେ ଯାର ମନ । ସମ୍ବନ୍ଧ ଭାବେ ହାଦେ ଜାଣ ॥
ଜନ୍ୟ ଜନକ ଆଦି କରି । ବିବିଧ ସମ୍ବନ୍ଧ ବିସ୍ତର ॥
ଶ୍ରୀକୃଷ୍ଣଠାରେ କରି ସୁତ । ଯେ ଯେ ସମ୍ବନ୍ଧରୂପା ଭକ୍ତି ॥
ତହିଁର ଅଧିକାରୀ ଶୁଣ । ମଥୁରାବାସୀ ଯଦୁଗଣ ॥
ଗୋପେ ଗୋପାଳକୁଳ ନନ୍ଦ । ସୁଦାମା ଆଦି ସଖାବୃନ୍ଦ ॥
ଦେବକୀ ଆଦି ଯଶୋବନ୍ତୀ । ଆଦିରେ ଯେତେକ ଅଛନ୍ତି ॥
ନାନା ଲେଖାରେ ବନ୍ଧୁଭାବେ । ଚିତ୍ତ ଲଗେପି କୃଷ୍ଣ ଠାବେ ॥
ନାତି ନନ୍ଦନ ଯେ ପିଅର । ଶ୍ୱଶୁର ଶାଳା ସହୋଦର ॥
ସମ୍ବନ୍ଧୀ ଭଣୋଇ ଭଣଜା । ମଉଳା ପିତା ମିତ୍ର ଅଜା ॥
ମଇତ୍ର ଆଦି ଆର ସଖା । ନାନାପ୍ରକାରେ କରି ଲେଖା ॥
ଏରୂପେ କରି ଲେଖାବିଧି । କୃଷ୍ଣରେ କରି ସ୍ନେହ ବୁଦ୍ଧି ॥
ଈଶ୍ୱର ବୋଲି ନ ଜାଣନ୍ତି । ବନ୍ଧୁଭାବରେ କରି ମତି ॥
ନିଶି ଦିବସ ନିରନ୍ତରେ । ଥାଆନ୍ତି କୃଷ୍ଣ ସଙ୍ଗତରେ ॥
ଖେଳରେ କଉତୁକ ରଙ୍ଗେ । କାଳ ନିଅନ୍ତି କୃଷ୍ଣ ସଙ୍ଗେ ॥
ଏହି ଭାବରେ ସେ ଯୁଗତେ । ଭବରୁ ତରିଲେ ସମସ୍ତେ ॥
ଏଥିରେ ସଂଶୟ ନ କର । ଶୁଣିମା ଏଥିର ବିସ୍ତର ॥
ଶତ୍ରୁଭାବରେ ଚିନ୍ତା କରି । ଅସୁରେ ଯାଇଛନ୍ତି ତରି ॥
ଏ କଥା ଶ୍ରୀଭାଗବତରେ । ଅଛଇ ସପ୍ତମ ସ୍କନ୍ଧରେ ॥
ଶ୍ରୀକୃଷ୍ଣଠାରେ କରି ମନ । ପାର ହୋଇଲେ ଯେତେ ଜାଣ ॥
କାମ ଭାବରେ ଦେଇ ମତି । ତରିଲେ ଗୋପର ଯୁବତୀ ॥
ଭୟରୁ ତରିଲା କଂସାସୁର । ଦ୍ୱେଷରୁ ତରି ଶିଶୁପାଳ ॥
ସମ୍ବନ୍ଧଭାବେ ଯଦୁଗଣ । ସ୍ନେହରେ ମାତା ପିତା ଜାଣ ॥
ଭକ୍ତିରେ ଭକ୍ତ ଯେ ନିକର । ହୋଇଲେ ହେଲେ ଭବୁ ପାର
ଏହା ଯେ କହନ୍ତି ମୂଢ଼ । ଏ କି ଅଟଇ ମିଥ୍ୟାବାଣୀ ॥
ଆଦ୍ୟ ବ୍ରହ୍ମାଣ୍ଡ ପୁରାଣେ । ଯେ ଅଛି ଶୁଣ ସାବଧାନେ ॥

ଜ୍ଞାନ ସାଧନ ସିଦ୍ଧ ଜନ । ବ୍ରହ୍ମରେ ହୁଅନ୍ତି ସେ ଲୀନ ॥
ହରିଙ୍କ ହାତେ ଯେ ମରନ୍ତି । ଦଇତେ ତହିଁ ଲୀନ ହୋନ୍ତି ॥
ଏ ଯେବେ ଶତ୍ରୁ ଭାବୁ କରେ । ଦଇତେ ଗଲେ ଯେବେ ତରେ ॥
ତହିଁରେ କର ବନ୍ଧୁଭାବ । କପାଁ ନ ତରିବେ ଯାଦବ ॥
ସମ୍ବନ୍ଧରୂପା ଏ ଭକତି । ଯେଣୁ ସମ୍ବନ୍ଧ ଭାବେ ମତି ॥
ସୁଜନ ଜନେ ଇଚ୍ଛା କରି । ବେଗେ ହୋଇବ ଭବୁ ପାରି ॥
ଶ୍ରୀକୃଷ୍ଣ ଚରଣ ଯୁଗଳ । ବିକାଶ ଅମଳ କମଳ ॥
ତହିଁରେ ମଧୁକର ଜାଣ । ଭଣତେ ଦାସ ଭୀମସେନ ॥

ଇତି ଶ୍ରୀ ହରିଭକ୍ତିଚନ୍ଦ୍ରୋଦୟେ ରାଗାନୁଗା ସାଧନେ ସମ୍ବନ୍ଧରୂପା ବର୍ଣ୍ଣନେ ନାମ ଏକବିଂଶୋଽଧ୍ୟାୟଃ ।

---

## ୨୨ଶ ଅଧ୍ୟାୟ ।

ଏଥି ଉତ୍ତରୁ ଏବେ ଶୁଣ । ସୁଜନେ ହୋଇ ସାବଧାନ ॥
ସମ୍ବନ୍ଧାନୁଗାର ବିସ୍ତର । କହଇ ସାବଧାନ କର ॥
ସମ୍ବନ୍ଧରୂପା ଅନୁଗତ । ଏ ଜାଣ ଅଟନ୍ତି ସୁଗତ ॥
ତେଣୁ ସମ୍ବନ୍ଧାନୁଗା ନାମ । ଯେ ଜାଣ ସାଧନ ଉତ୍ତମ ॥
ସାଧକ ଶୁଦ୍ଧ ଚିତ୍ତ ଧରି । ଶ୍ରୀକୃଷ୍ଣଠାରେ ବୁଦ୍ଧି କରି ॥
ଈଶ୍ୱର ବୋଲି ସେ ଜାଣିଣ । ବନ୍ଧୁଭାବରେ ଦିଏ ମନ ॥
ଭ୍ରାତା ଜନକ ସୁତ ବୁଦ୍ଧି । ଲେଖାରେ ନାନାବିଧି ଆଦି ॥
କେ ନନ୍ଦ ବସୁଦେବ ଭାବ । ଶୁଣି କରଣ କରେ ଲୋଭ ॥
କେ ଯଦୁମାନଙ୍କ ଚରିତ । ଶୁଣିଣ ଲୋଭ କରି ଚିତ୍ତ ॥
କେ ଦାମ ସୁଦାମ ଆଦିରେ । ଯେତେକ ସଖାଙ୍କ ବେଭାରେ ॥
ଶୁଣି ତାଙ୍କର ଭାବ ବିଧି । ତହିଁରେ ହୁଅନ୍ତି ଲୁବୁଧି ॥
କେ ଅବା ଅପୁତ୍ରିକ ଜନ । ପୁତ୍ରଭାବରେ ଦିଏ ମନ ॥
କେ ଯେ ଆପଣଙ୍କେ ଗତ କରି । ସହାୟଭାବେ ଚିତ୍ତେ ଧରି ॥
କେ ଘେନ ଜନ ସୁଗତରେ । ବାନ୍ଧବ ବୁଦ୍ଧି ମନେ କରେ ॥
କେବା ଅଟନ୍ତି ଅରକ୍ଷିତ । ରକ୍ଷକ ଭାବେ ଦିଅନ୍ତି ଚିତ୍ତ ॥
ଏ କେବେ ନାନା ପରକାରେ । ଚିତ୍ତ ଦିଅନ୍ତି କୃଷ୍ଣ ଠାରେ ॥

ସେହି ଭାବରୁ ତାଙ୍କ ମନ । ବାହାର ନୋହେ ଯଦ୍ଧ ଜାଣ ॥
ଯେ ଯେଉ ଚିନ୍ତା ଥାନ୍ତି କରି । ସେହିପ୍ରକାରେ ଚିତ୍ତେ ଧରି ॥
ସେହି ଭାବରେ ତାଙ୍କ ଚିତ୍ତ । ନିରତେ ହୋନ୍ତେ ଅନୁରତ ॥
କାଳେ ଈଶ୍ୱର ବୁଦ୍ଧି ଯାଏ । ଭାବନା ବୁଦ୍ଧି କୃଷ୍ଣେ ହୁଏ ॥
ଯେ ଜଡ଼ ଭାବେ ଭାବୁ ଥାନ୍ତି । ବନ୍ଧୁ ଜନକ ପୁତ୍ର ନାତି ॥
ସେହି ଭାବନା ହୁଏ ଜାଣ । ଈଶ୍ୱର ବୋଲି ନୁହେ ଜ୍ଞାନ ॥
ସେ ଜାଣ ଯେତେ କାଳ ଥାନ୍ତି । ତହୁଁ ବାହାର ନୋହେ ମତି ॥
ବାହ୍ୟରେ ଅନ ଚେଷ୍ଟାମାନ । କଲେ ବିକାର ନୋହେ ମନ ॥
ସେ ପୁଣି ସେ ଦେହର ଅନ୍ତେ । ସେହି ଭାବନା ଧରି ଚିତ୍ତେ ॥
ପାର୍ଥିବ ଦେହକୁ ତେଜନ୍ତି । ସେହି ଭାବକୁ ସେ ଲଭନ୍ତି ॥
ଯେ ଭାବ ଥାନ୍ତିଟି ଯେମନ୍ତେ । ଜନମ ଲଭନ୍ତି ତେମନ୍ତେ ॥
ସେ ଜନେ କୃଷ୍ଣ ତାହାଙ୍କର । ହୁଅନ୍ତି ସେହି ସେ ପ୍ରକାର ॥
ସେ ସୁଖେ ଲୀଳା ଯେ କରନ୍ତି । ଅନ୍ତରେ ନିତ୍ୟକୁ ଚଳନ୍ତି ॥
ନିତ୍ୟ ଗୋଲୋକେ ପାନ୍ତି ବାସ । ସୁଖେ ରହନ୍ତି କୃଷ୍ଣ ପାଶ ॥
ଏଥେ ସଂଶୟ ନାହିଁ ଜାଣ । ଶୁଣିମା ଏଥିର ବଚନ ॥
ପୁରାଣମାନଙ୍କେ ବହୁତ । ଅଛଇ ଏଥିର ସିଦ୍ଧାନ୍ତ ॥
ଯେ ନାରାୟଣ ବ୍ୟୂହ ସ୍ତବେ । ଅଛଇ ଶୁଣ ଯଥା ଭାବେ ॥
ଭ୍ରାତା ସୁହୃଦ ପିତା ପତି । ନନ୍ଦନ ରକ୍ଷକ ପ୍ରଭୃତି ॥
ଏ ଭାବେ କୃଷ୍ଣଙ୍କୁ ନିରତେ । ଯେ ଜାଣ ଭାବନ୍ତି ଯୁଗତେ ॥
ସେ ଜାଣ ତରନ୍ତି ପ୍ରମାଣ । କାଟନ୍ତି ଏ ଭବ ବନ୍ଧନ ॥
ସେ ପୁଣ୍ୟ ଲୋକକଟି ବେଭାରେ । ଅଟନ୍ତି ଲୋକଙ୍କ ମଧରେ ॥
ଏମନ୍ତ ବୋଲିଛନ୍ତି କେହି । ଏଥେ ସଂଶୟ ଆଉ ନାହିଁ ॥
ଅନ୍ତର ଅଛଇ ବିସ୍ତର । ସୁଜନେ ସାବଧାନ କର ॥
ଏ ଶିରୋମଣି ଶାସ୍ତ୍ର ବାଣୀ । ଗୁରୁଙ୍କ ମୁଖୁଁ ଅଛି ଶୁଣି ॥
ଭକ୍ତି ସାଧନ ବିଧି ମାର୍ଗେ । କହି ଅଛନ୍ତି ଅନୁରାଗେ ॥
ମଧ୍ୟରେ କେଉଣସି କାଳେ । ଲୁବ୍ଧ ପୁଷର ଯେ ମଧରେ ॥
ଏକ ବର୍ଦ୍ଧକୀ ଅଳ୍ପ ରହି । ସ୍ୱଭାବେ ଅପୁତ୍ରିକ ସେହି ॥
ବୃଦ୍ଧ ସେ ଅଟଇ ବର୍ଦ୍ଧକୀ । ପୁତ୍ର ବିହୀନେ ବଡ଼ ଦୁଃଖୀ ॥

କମ ବକଣ ବନ୍ଧେ ଧନ । ତହିଁ ଉପାୟ ନାହିଁ ଆନ ॥
ଏମନ୍ତେ ଏକଇ ଧନରେ । ନାରଦ ଗଲେ କୁରୁପୁରେ ॥
ବର୍ଦ୍ଧକୀ ନାରଦଙ୍କୁ ଦେଖି । ତକ୍ଷଣେ ଆସନ ଉପେକ୍ଷି ॥
ସାଷ୍ଟାଙ୍ଗେ ପ୍ରଣିପାତ କଲେ । ବହୁତ ବିନୟ କହିଲେ ॥
ହେ ମୁନି ପୁଅ ମୋର ନାହିଁ । ବ୍ୟର୍ଥ ହେଲା ମୋର ଦେହି ॥
ପରଲୋକରେ ଅପୁତ୍ରିକ । ଲଭନ୍ତି ପୁନ୍ନାମ ନରକ ॥
ଏ ଘେନି ହେଉଛି କାତର । ହେ ମୁନି ମୋତେ ଦୟା କର ॥
ଏଥିରୁ ତରିବା କାରଣ । ତୁମ୍ଭରେ ପଶିଲି ଶରଣ ॥
ନାରଦ ତାଙ୍କ ଭକ୍ତି ଘେନି । ଆଶ୍ୱାସି କହେ ତାଙ୍କୁ ବାଣୀ ॥
ସନ୍ତୋଷେ କହେ ମୁନିବର । ଶୁଣ ବର୍ଦ୍ଧକୀ ହୋଇ ସ୍ଥିର ॥
ବିଷ୍ଣୁପ୍ରତିମା ଯେ ସୁଗତ । ପ୍ରତିଷ୍ଠା କରଣ ତ୍ୱରିତ ॥
ତାହାଙ୍କୁ ନନ୍ଦନ ବୁଦ୍ଧିରେ । ରଖିବ ତୁମ୍ଭର ମନ୍ଦିରେ ॥
ପୁଅ ଭାବନ୍ତୁଁ ମନେ ଆନ । ବିଗ୍ରହ ନ କରିବ ଜାଣ ॥
ଏହି ବିଗ୍ରହ ମନେ କର । ହେଲେ ଭବରୁ ଯିବ ତର ॥
ଏମନ୍ତ କହିଗଲେ ମୁନି । ଏଥି ଉତ୍ତାରୁ ଶୁଣ ବାଣୀ ॥
ବର୍ଦ୍ଧକୀ ଦିବ୍ୟ ଗୋପୀନାଥ । ତକ୍ଷଣେ ଗଢ଼ିଲା ସୁଗତ ॥
ତାହାଙ୍କୁ ଚିତ୍ର ଯେ କରାଇ । ପ୍ରତିଷ୍ଠା କରଣ ବସାଇ ॥
ପୁତ୍ର ମାନସ ତହିଁ କରି । ସେ ଭାବୁଁ ଆନ ନ ବିଗ୍ରହି ॥
ଯେମନ୍ତ ସ୍ନେହ ପୁତ୍ରଠାରେ । ହୋଇଲା ସେହି ଘରକାରେ ॥
ପ୍ରାତରୁ ନିତ୍ୟକର୍ମ ସାରେ । ନାନାପ୍ରକାରେ ବେଶ କରେ ॥
ବାଳକଙ୍କର ଭକ୍ଷ୍ୟମାନ । ତା ଆଣି ଦିଅଇ ବହନ ॥
ପୁଣି ଭୋଜନ କାଳ ଜାଣି । ଅନ୍ନ ଦିଅନ୍ତି ବେଗେ ଆଣି ॥
ବିବିଧ ପ୍ରକାରେ ବ୍ୟଞ୍ଜନ । ଯେ ଯେ ଅମୂଲ୍ୟ ଦ୍ରବ୍ୟମାନ ॥
ଯହିଁ ବା ଅପୂର୍ବ ଦେଖନ୍ତି । ପୁତ୍ର ନିମନ୍ତେ ଆଣିଥାନ୍ତି ॥
କ୍ଷଣେହେଁ ନ ଛାଡ଼ନ୍ତି ପାଶ । ବହୁତ କରଣ ମୁହାଁସ ॥
ସେ ଏଣେ ତେଣେ ଗଲେ ଜାଣ । ପୁତ୍ର ଠାବରେ ଦିଏ ମନ ॥
ଏ ଭାବେ ଉଦବେଗ ମନ । ପୁତ୍ରଠାବରେ ଥାଏ ଜାଣ ॥
ବାହୁଡ଼ି ଆସେ ପୁଣ ଘର । ପୁତ୍ରଙ୍କୁ ଦେଖି ହୋଏ ସ୍ଥିର ॥

ଏ ଭାବେ କେତେଦିନ ଯାନ୍ତେ । ସେ ପୁଣି ସେ ଦେହର ଅନ୍ତେ ॥
ସେହୁ ବାସନା ଜାଣ ଯେଣ । ଜନମ ହୋଇଲେ ଅବଶ୍ୟ ॥
କୃଷ୍ଣର ଜନକ ଭାବରେ । ହୋଇଲେ ବାସନା ବଳରେ ॥
ତାଙ୍କର ପୁତ୍ର ହୋଇକରି । ଜାତ ହୋଇଲେ ଦଇତ୍ୟାରି ॥
ପ୍ରଭୁଙ୍କୁ ପୁତ୍ର ଭାବେ ପାଇ । ବହୁତ ସୁଖୀ ସେ ଯେ ହୋଇ ॥
ସେ ପୁଣି ସେ ଦେହର ଅନ୍ତେ । ନିତ୍ୟରୁ ଚଳିଲେ ଯୁଗତେ ॥
ଏହି ଭାବରେ ସାଧକର । ବହୁତ ଯାଇଛନ୍ତି ତରି ॥
ପିତୃଭାବରେ ଯେଉଁଜନ । ତାହା ଶୁଣିମା ସାଧୁଜନ ॥
ଶ୍ରୀ ଭାଗବତ ଦଶମରେ । ଆଜ୍ଞା ହୋଇଛି ଶ୍ରୀ ମୁଖରେ ॥
ଯେ ମୋତେ ପିତୃଭାବେ କରି । ନିରତେ ଭଜନ୍ତି ଚତୁର ॥
ବେଭାରେ ପିତା ମୁଁ ଯୁଗତେ । ସେ ଜାଣି ଭଜନ୍ତି ମୋତେ ॥
ତାଙ୍କ ବାଞ୍ଛିତ ଫଳମାନ । ଅବଶ୍ୟ ପାଇ ସେ ପ୍ରମାଣ ॥
ବଶ ମୁଁ ହୁଅଇ ତାଙ୍କରେ । ଯେ ପୁତ୍ର ସ୍ନେହର ଚତୁରେ ॥
ବନ୍ଧୁ ଭାବରେ ଭଜିବାର । ତହିଁର ଶୁଣିବା ଚତୁର ॥
ବୈଷ୍ଣବ ଶାସ୍ତ୍ରେ ଛନ୍ତି କହି । ପ୍ରଭୁ ଶ୍ରୀମୁଖେ ଆଜ୍ଞା ଦେଇ ॥
ଦେବତା ନ ବୋଲିବ ମୋତେ । ଗନ୍ଧର୍ବ ନୋହେ ମୁଁ ଯୁଗତେ ॥
ଯକ୍ଷ ଯେ ନୁହଇ ଅବର । ଅବର ନୋହେ ବିଦ୍ୟାଧର ॥
ବନ୍ଧୁ ଭାବରେ ଯେଉଁଜନ । ମୋତେ ଭଜନ୍ତି ଅନୁକ୍ଷଣ ॥
ମୁଁ ବନ୍ଧୁ ଅଟଇ ତାଙ୍କର । ସେ ବନ୍ଧୁ ଅଟନ୍ତି ଆମ୍ଭର ॥
ସୁହୃଦ ସହାୟ ଭାବେଣ । ଭଜନ ସାବଧାନେ ଶୁଣ ॥
ଏହି ଯେ ଶ୍ରୀମୁଖର ବାଣୀ । ଆଜ୍ଞା ହୋଇଛି ଯାହା ଶୁଣି ॥
ତେଣ ସକଳ ବନ୍ଧୁଜନ । ଯେ ମୋତେ ସୁହୃଦ ଭାବେଣ ॥
ଘୋର ଆତଙ୍କ ପଡ଼ିଥାଇ । ସହାୟ କରଣ ଚନ୍ତଇ ॥
ତାଙ୍କ ସୁହୃଦ ଜାଣ ମୁହିଁ । ଆମ୍ଭର ତହୁଁ ଆନ ନାହିଁ ॥
ଏମନ୍ତ କୁରୁ ସଭା ତଳେ । ଦ୍ରୌପଦୀ ଦେଖ ଯେ ଅକୁଳେ ॥
ଥିଲେ ସକଳ ବନ୍ଧୁଜନ । ଅବର ଠୁଳ ଗୁରୁମାନ ॥
ଯେ ନିଜପତି ପଞ୍ଚବୀର । ସମସ୍ତେ ଅଟନ୍ତି ଯେ ଶୂର ॥
ତାହାଙ୍କୁ ଛାଡ଼ି ଆତଙ୍କରେ । ଚିତ୍ତ ଯେ ଦେଲେ ଆମ୍ଭଠାରେ ॥

ମୋ ବିନୁ ନ ଧରିଲେ ଆନ । ଯେତେକ ଥିଲେ ବନ୍ଧୁଜନ ॥
ମୋତେ ଡାକିଲେ ରଖ ବୋଲି । ତେଣୁ ସେ ସୁହୃଦ ଅମୂରି ॥
ଧାନ ଭାବରେ ଦାମୋଦର । ଶୁଣିତ ଅଛ ସେ ବିସ୍ତର ॥
ଭକ୍ତଙ୍କ ଭାବେଣ ଅଧାର । ଜଗତକୁ କରନ୍ତି ପାର ॥
ଏ ଭାବେ ହୋଇଣ ସାଧନ । ସମ୍ବନ୍ଧାନୁଗା ବୋଲି ଜାଣ ॥
ସୁଜନେ ଶୁଣ ମନଦେଇ । ଯେ ଷଡ଼ଅଙ୍ଗ କହିଲଇଁ ॥
ରାଗଆତ୍ମିକା ରାଗାନୁଗା । କାମରୂପା ଯେ କାମାନୁଗା ॥
ସମ୍ବନ୍ଧରୂପା ଯେ ଆବର । ସମ୍ବନ୍ଧାନୁଗାର ପ୍ରକାର ॥
ଏ ଷଟ ଅତ୍ୟନ୍ତ ଗୁପତ । ସାଧନ ଭକ୍ତିର ଏ ତତ୍ତ୍ୱ ॥
ସକଳ ସାଧନଙ୍କ ସାର । ଉପଦେଶର ଏ ବିସ୍ତର ॥
ପୁରାଣମାନଙ୍କ ବଚନ । ପ୍ରମାଣ ସାଧ ଏହୁ ଜାଣ ॥
ଏ ଭାବେ ଯେ ଜାଣି ସାଧନ୍ତି । ଅନାୟାସେ ସେ ଲଭନ୍ତି ॥
ଏଥିରେ ବେଗେଣ ପ୍ରସନ୍ନ । ହୁଅନ୍ତି ପ୍ରଭୁ ଭଗବାନ ॥
ସୁଜନ ଜନେ ବେଗେ କର । ଭକ୍ତିର ସାଧନ ବିସ୍ତର ॥
କୃଷ୍ଣ ଭକ୍ତିକି କର ଆଶ । କହିଲା ଶିଶୁ ରାମଦାସ ॥

ଇତି ଶ୍ରୀ ହରିଭକ୍ତିଚନ୍ଦ୍ରୋଦୟେ ରାଗାନୁଗା ସାଧନେ ସମ୍ବନ୍ଧାନୁଗା ଭକ୍ତି ବିସ୍ତରେ ନାମ ଦ୍ୱାବିଂଶୋଽଧ୍ୟାୟଃ ।

---

## ୨୩ଶ ଅଧ୍ୟାୟ ।

ଏଥିଉତ୍ତାରୁ ସାବଧାନେ । ଶୁଣିମା ସାଧୁଜନମାନେ ॥
ଭକ୍ତିର ସାଧନ ବିସ୍ତର । ଶୁଣିଲ ଯେତେ ପରକାର ॥
କହିଥି ଚଉଷଠି ଜାଣ । ରାଗାନୁଗାହିଁ ଯେତେପୁଣ ॥
ଏ ଭାବେ ସବୁର ଅଙ୍ଗରେ । ସାଧନ ଭକ୍ତି ଏ ବେଦରେ ॥
ଏ ଅଙ୍ଗମାନଙ୍କର ଭେଦ । ଯା କହିଛନ୍ତି ଋଷିବୃନ୍ଦ ॥
ଏଣୁ ବହୁତ ଅଙ୍ଗ ଜାଣ । ଶ୍ରୀକୃଷ୍ଣ ଭକ୍ତିର ସାଧନ ॥
ଯେ ଯେଉଁ ଅଙ୍ଗେ ଇଚ୍ଛା କର । ଶ୍ରୀକୃଷ୍ଣ ଭକ୍ତି ଯେ ବିସ୍ତର ॥
ଜାଣି ଧ୍ୟବସେ ନିରନ୍ତରେ । ସାଧନ କର ଯେ ଯାହାରେ ॥
କ୍ଷଣେହେଁ ନ କରିବ ଆନ । ନିରତେ କରିବ ସାଧନ ॥

ଭକ୍ତି ଭାବରେ ଅଛି ବଶ । ହୁଅନ୍ତି ପ୍ରଭୁ ପୀତବାସ ॥
କେବଳ ଭକ୍ତି ମାତ୍ରେ ଅନୁସାରେ । ବଶ ସେ ହୁଅନ୍ତି କେଶବରେ ॥
ଏକଥା ଅଟଇ ପ୍ରମାଣ । ଏଥି ସାଧନ ପୁଣ ଶୁଣ ॥
ଶ୍ରୀ ଭଗବତ ଯେ ଗୀତାରେ । ଆଜ୍ଞା ହୋଇଛି ଶ୍ରୀମୁଖରେ ॥
ଅର୍ଜ୍ଜୁନ ଅଗ୍ରରେ ଯୁଗତ । ଶୁଣ ଅର୍ଜ୍ଜୁନ ମୋ ଚରିତ ॥
ଯେ ଯେଉଁ ଭାବ ଘେନ ମୋତେ । ଭଜନ୍ତି କରନ୍ତି ଯୁଗତେ ॥
ସେ ଭକ୍ତି ଚିନ୍ତା ଅନୁସାରେ । ପ୍ରସନ୍ନ ହୋଇ ମୁଁ ତାଙ୍କରେ ॥
ଯେ ମୋତେ ଯେମନ୍ତ ଭଜନ୍ତି । ସେ ମୋତେ ସେ ଭାବେ ଲଭନ୍ତି ॥
ସମୁଦ୍ର ଘଟ ଅନୁସାରେ । ଜଳ ଧରନ୍ତି ଯେ ପ୍ରକାରେ ॥
ଯେ ଯେତେ ଘଟ ଘେନ ଯାନ୍ତି । ସେ ସେତେ ନୀର ଯେ ଆଣନ୍ତି ॥
ସେହି ପ୍ରକାରେ ଯେ ଯେତେକ । ଭଜନ୍ତି ସିଦ୍ଧି ତା ତେତେକ ॥
ଏମନ୍ତ ଛନ୍ତି ଆଜ୍ଞା ଦେଇ । ଏ କଥା ଅନ୍ୟଥା ନୁହଇଁ ॥
ଏ ଧ୍ୟାନ ନିରନ୍ତରେ ଭଜ । ସୁଜନେ ପ୍ରଭୁ ଦେବରାଜ ॥
ଆହୁରି ଶୁଣିବା ବସ୍ତୁର । ସୁଜନେ ସାବଧାନ କର ॥
ଜୀବାନ୍ତ ଯାକେ ପୁଣି ଜାଣ । ଯେ ଯାହା ଭାବୁଥାନ୍ତି ପୁଣ ॥
ସେ ଭାବେ ଜୀବନର ଅନ୍ତେ । ତାଦୃଶ ହୁଅନ୍ତି ଯୁଗତେ ॥
ଅତ୍ୟନ୍ତ ଅଭ୍ୟାସୁଁ ତାଙ୍କର । ପ୍ରବେଶ ହୁଅନ୍ତି ଆଗର ॥
ଯେ ସେହି ଭାବେ ଦେଇ ମତ । ଯେ ନିଜ ଦେହକୁ ତେଜନ୍ତି ॥
ସେହି ଭାବନାରୁଟି ଶୁଣ । ଜନମ ଲଭନ୍ତିଟି ପୁଣ ॥
ଏ ଭାବେ ଅଛଇ ଦେଖାଉ । ଏ ଜାଣ ପୁରାଣ ବସ୍ତୁର ॥
ପୂର୍ବେ ଭରତ ତପସ୍ୱୀର । ଏକଇ ମୃଗ ପୋଷିକର ॥
ତାହାର ଚରିତ୍ର ନିମନ୍ତେ । ସ୍ନେହରେ କରନ୍ତି ଯୁଗତେ ॥
ସେ ମୃଗଠାରେ ଅନୁଗତ । ହୋଇ ନିରତେ ଥାଇ ଚିତ୍ତ ॥
ତାହାଙ୍କ ଅନ୍ତକାଳେ ପୁଣ । ମୃଗେ ପଡ଼ିଲା ଯାଇ ମନ ॥
ସେ ମୃଗ ଉତ୍ତରୁ ତାଙ୍କର । ସ୍ନେହରେ ନୋହିଲା ବାହାର ॥
ପ୍ରାଣ ଛାଡ଼ିଲେ ତପସ୍ୱୀର । ମୃଗର ଚିନ୍ତା ମନେ ଧରି ॥
ସେ ପୁନଃ ଆର ଜନମେଣ । ଲଭିଲେ ମୃଗ ତନୁ ଜାଣ ॥
ଏ ଘେନ କର ଭାବଗ୍ରାହୀ । ଅର୍ଜ୍ଜୁନ ଆଗେ ଛନ୍ତି କହି ॥

ଶ୍ରୀମଦ୍ଭଗବତ ଗୀତାରେ । ଆଜ୍ଞା ହୋଇଛି ଶ୍ରୀମୁଖରେ ॥
ଯେବଣ ଚିନ୍ତାଟି ଯାହାର । ନିରତେ ଥାଇ ସେ ଚିତ୍ତର ॥
ପୁତ୍ର ଭାରିଯା ଗୃହ ଜନ । ବନ୍ଧୁ ବାନ୍ଧବ ନିଜ ଧନ ॥
ସେ ତାଙ୍କ ଜୀବନର ଅନ୍ତେ । ପ୍ରବେଶ ହୋଇ ନିଜ ଚିତ୍ତେ ॥
ସେହି ଇଚ୍ଛାରେ ଥାଇ ମନ । ସହଜେ ତେଜନ୍ତି ଜୀବନ ॥
ସେ ପୁଣି କାଳେ ପରାପତ । ଜନମ ଲଭନ୍ତି ଯୁଗତ ॥
ଏ ହେନ ସର୍ବଦା ସ୍ମର । ମୋତେ ନିରତେ ଚିନ୍ତାକର ॥
ଏମନ୍ତ କୃଷ୍ଣ ଆଜ୍ଞା ଦେଇ । ଏକଥା ଅନ୍ୟଥା ନୁହଇ ॥
ବିଶେଷେ ଶ୍ରୀମୁଖର ଆଜ୍ଞା । ତାହା କେ କରିବ ଅବଜ୍ଞା ॥
ଏ ହେନ କରି ସାଧୁଜନ । ପୁତ୍ର ଭାରିଯା ଗୃହ ଧନ ॥
ଏ ଆଦି ଯେତେଟି ଅଛନ୍ତି । ଏଥୁଁ ବାହାର କରି ମତି ॥
କୃଷ୍ଣ ଚରଣେ ନେଇ ଦିଅ । ଏହି ଚେଷ୍ଟାରେ ପଛେ ଥାଅ ॥
ଘଟ ନର୍ତ୍ତକର ବଗୃରେ । ଚିତ୍ତ ନିବେଶ କୃଷ୍ଣଠାରେ ॥
ସେ ଯେହ୍ନେ ଘଟ ଶିର ହେନ । ନଗ୍ର ଭିତରେ ପଶି ପୁଣି ॥
ନୃତ୍ୟ ସେ କରନ୍ତି ହରଷେ । ଅଖିଳ ଜନ ମନ ତୋଷେ ॥
ତାଙ୍କର ଚିତ୍ତ ନିରନ୍ତରେ । ଥାଇ ସେ ଶିର ଘଟ ପରେ ॥
କ୍ଷଣେ ନୁହଇ ତହୁଁ ଆନ । ନିରତେ ଘଟେ ଥାଇ ମନ ॥
ଏ ଭାବେ ହେଲେହେଁ ଯୁଗତ । କୃଷ୍ଣଚରଣେ ଦେଇ ଚିତ୍ତ ॥
ହେଲେ ହୋଇବ ଭବୁଁ ପାର । ଉଦ୍ଧରି ନେବେ ଦାମୋଦର ॥
ଶ୍ରୀକୃଷ୍ଣ ଭକ୍ତିର ସାଧନ । ଏଠାରୁ ହୋଇଲା ସମ୍ପୂର୍ଣ୍ଣ ॥
ତ୍ରୟୋବିଂଶତି ଅଧ୍ୟାୟେହିଁ । ସାଧନ ବଗୃରଟି ସହିଁ ॥
ନିରତେ ସାଧନ ବଗୃର । ସୁଜନେ ଅଛି ଏ ଅଧାର ॥
କୃଷ୍ଣଚରଣେ ଦେଇ ମନ । କହଇ ଦାସ ଭୀମସେନ ॥
ହେ ପ୍ରଭୁ ଆତଙ୍କନାଶନ । ଆତଙ୍କେ ଡାକିଲେ ସେ ଶୁଣ ॥
କୁରୁରାଜନ ସଭାତଳେ । ଗୁରୁଜନଙ୍କର ଅଗରେ ॥
ପାପିଷ୍ଠ ଦୁଷ୍ଟ ଦୁଃଶାସନ । ଉଲଗ୍ନ କରିବ ବୋଲିଣ ॥
ବସନ ଉଚ୍ଛୁଡନ୍ତେ କରେ । ଦେଖି ସେ ଲଜ୍ଜାର ଆକୁଳେ ॥
ବେଣୀ ଲୋଚନ ବୁଜି କରି । ଡାକିଲେ ରଖ କମ୍ବୁଧାରୀ ॥

ଶରଣଜନଙ୍କ ସୋଦର । ଲଜ୍ଜାରୁ କରବା ନିସ୍ତାର ॥
ଉଦ୍ଧାର ମାନ ଉଦ୍ଧାରଣ । ନିବାର ଦୁଃସହ କଷଣ ॥
ଦ୍ୱାରକା ଥାଇ ତା ଶୁଣିଲେ । କୋଟି ବସନ ତାଙ୍କୁ ଦେଲେ ॥
ବସନ ପର୍ବତ ଆକାର । ପଡ଼ିଲା ନୋହିଲା ବାହାର ॥
ଏବେ ଶୁଣିବା ପୀତବାସ । ଏ ମୋର କାଳ ଯେ ପୁରୁଷ ॥
ଦୁଃଶାସ ପ୍ରାୟେ ମୋତେ କର । କରେ ମୋ କେଶ ଅଛି ଧର ॥
ଏ ପିଣ୍ଡ ବସନ ମୋହର । ନିଶ୍ଚେ କରବେ ପ୍ରଭୁ ଦୂର ॥
ଏ ଦୂର ନୋହୁ ଭବଗ୍ରାହୀ । ତୁମ୍ଭର ଭକ୍ତି ବାସ ଦେଇ ॥
ଏ କାଳ ତୃଣ୍ଡି କର ଦାଉ । ମୋତେ ଯେ ଦେବାକ ଉଦ୍ଧର ॥
ତୁମ୍ଭର ଅଭିନ୍ଦ ଚରଣ । ଭୀମ ଯେ ପଶିଲା ଶରଣ ॥

ଇତି ଶ୍ରୀ ହରିଭକ୍ତିଚନ୍ଦ୍ରୋଦୟେ ସାଧନ ବୁଦ୍ଧି ବର୍ଣ୍ଣନେ ନାମ ତ୍ରୟୋବିଂଶୋଽଧ୍ୟାୟଃ ।

## ୨୪ଶ ଅଧ୍ୟାୟ ।

ବନ୍ଦଇ ପ୍ରଭୁ ବନମାଳୀ । ଯେ ବୃନ୍ଦାବନେ କେଳି-କାର ॥
ସନ୍ତାନ ପାଦପର ତଳେ । ମଣି ନିର୍ମିତ ବେଦ୍ଧ ପରେ ॥
ତ୍ରିଭଙ୍ଗି ଛନ୍ଦରେ ବିଜୟେ । ମୁରଲୀ ବେଣ କରେ ଶୋହେ ॥
ବିକାଶ ଇନ୍ଦୀବର କାନ୍ତି । ଆଜାନୁ ସୁଧାକର ଭ୍ରାନ୍ତି ॥
ବର୍ହ ଅବତଂସ ଚୂଳ । ଶ୍ରୀବତ୍ସ ଲକ୍ଷଣ ଉଦାର ॥
କୌସ୍ତୁଭଧାର ପୀତବାସ । ଗୋ ଗୋପୀମଣ୍ଡଳେ ପ୍ରକାଶ ॥
ଗୋପୀଙ୍କ ନୟନ କମଳ । ପୂଜିତ ଯାର କଳେବର ॥
ବିବିଧ ଭୂଷଣେ ରଞ୍ଜିତ । ମୁରଲୀ ବାଦନେ ପଣ୍ଡିତ ॥
ନିନ୍ଦନ୍ତି କୋଟିଏ ମଦନ । ଗୋପୀଙ୍କ ମାନସ ମଥନ ॥
ଅଙ୍ଗାର ନଟବର ବେଶ । ଭୀମଦାସର ତାଙ୍କୁ ଆଶ ॥
କରଣ କୁଳରେ ଜନମ । ତାତ ମୋ ବିଷ୍ଣୁଭକ୍ତ ଜାଣ ॥
ଚନ୍ଦ୍ରଶେଖର ମହାପାତ୍ର । ନାମେ ଅବନୀ ତଳେ ଜାତ ॥
ସାଧୁ ସେବାରେ ନିରନ୍ତର । ନାମ ଭଜନ୍ତି ତତପର ॥
ନାମ ଭଜନ ବିନୁ ଆନ । କାହିଁ ନ ରସେ ତାଙ୍କ ମନ ॥

ସେ ମୋତେ ଅନୁଗ୍ରହ କର । ବୋଇଲେ ଭଜ ବେଣୁଧାରୀ ॥
ସେ ଯେନ ଭଜନର ମାର୍ଗ । ବିସ୍ତର ହୋଇ ଉଦବେଗ ॥
କୌଣ୍ଡିସ କୁଳରେ ଜନମ । ଯେ ସେ ମାଧବ ମିଶ୍ର ନାମ ॥
କବିଶେଖର ଯେ ପଦବୀ । କବି ସମାନ ସେ ଯେ କବି ॥
ନିପୁଣ ସକଳ ବିଦ୍ୟାରେ । ଆବର ବିଷ୍ଣୁର ଭକ୍ତିରେ ॥
ତାଙ୍କ ଚରଣ ଆଶ୍ରେ କର । ବହୁତ କାର୍ପଣ୍ୟ ହୋଇଲି ॥
ସେ ମୋରେ କରି ଅନୁରାଗ । କହିଲେ ହରିଭକ୍ତି ଭାବ ॥
ସେ ଉପଦେଶ ଦେଲେ ଯାହା । ବିସ୍ତର କରଇ ମୁଁ ତାହା ॥
ଜଗତ ଜନ ହିତ ପାଇଁ । ତା ଗୀତ କରି ବିସ୍ତରଇଁ ॥
ଅଭ୍ୟାସ ହୋଇବ ଯୁଗତେ । ରହିବ ନିରବଧି ଚିତ୍ତେ ॥
ଭକ୍ତି ଗ୍ରନ୍ଥରେ ମୋର ନାମ । ହୋଇବ ଆବର ଲେଖନ ॥
ଏତେ ବିସ୍ତରି ମୁହିଁ କଲି । ଭଗବାନ କୃପାରୁ କରି ॥
ସୁଜନେ ସାବଧାନ କର । ଶ୍ରୀକୃଷ୍ଣ ଭକ୍ତିର ବିସ୍ତର ॥
ସାଧନ ଭକ୍ତିର ଉତ୍ତରେ । ଭାବର ଭକ୍ତିର ବିସ୍ତରେ ॥
ସେ ଭାବ ଭକ୍ତିର ବିସ୍ତର । ଯେ ଯେ ମାନବେ ଅଗୋଚର ॥
ଭାବତ ସାଧନ ନୁହନ୍ତି । ତାଙ୍କ ଇଚ୍ଛାରେ ପ୍ରକାଶନ୍ତି ॥
ସାଧୁମାନଙ୍କର ଚିତ୍ତରେ । ପ୍ରକାଶ ହୁଅନ୍ତି ଇଚ୍ଛାରେ ॥
ସାଧୁଙ୍କ ଲକ୍ଷଣ ଯୁଗତ । ଭାବ ଯେ ହୁଅନ୍ତି ବିଦିତ ॥
ସୁଜନେ ସାବଧାନେ ଶୁଣ । ଭାବ ଭକ୍ତିର ଉତପନ ॥
ତିନିପ୍ରକାରେ ଭାବ ଜାତ । ସାଧୁଙ୍କ ଚିତ୍ତରେ ଯୁଗତ ॥
ଅତ୍ୟନ୍ତ ଭକ୍ତି ସାଧନରୁ । ଆବର ଶ୍ରୀକୃଷ୍ଣ କୃପାରୁ ॥
ଭକ୍ତି କୃପାରୁ କରି ଜାଣ । ତିନିପ୍ରକାରୁ ଜାତ ପୁଣ ॥
ଭାବ ଜାତକୁ ଏହି ତିନି । କାରଣ ଅଟନ୍ତି ପୁଣି ॥
ଏ ତିନି କଥାରୁ ଯୁଗତ । ଭାବ ହୁଅନ୍ତି ଜାଣ ଜାତ ॥
ଶୁଣିବା ତହିଁର ବିସ୍ତର । ଯେ ତିନି କାରଣୁ ଭକ୍ତର ॥
ସକଳ ପାପ ନାଶ ଯାନ୍ତି । ପୁଣ୍ୟ ଶରୀର ସେ ହୁଅନ୍ତି ॥
ତମ ରଜସ ଗୁଣମାନ । ନାଶ ଯାଆନ୍ତି ହାଦେ ଶୁଣ ॥
ସେ ଶୁଦ୍ଧ ସତ୍ତ୍ୱ ଯେ ଗୁଣରେ । ରହନ୍ତି ବିଶୁଦ୍ଧ ଆତ୍ମାରେ ॥

ଅତି ନିର୍ମଳ ଚିତ୍ତ ହୋଇ | କିଛିହେଁ ବିକାର ନ ଥାଇ ||
ସେ ଚିତ୍ତେ ପ୍ରଥମେ ବିକାର | ଭକ୍ତି ଆସ୍ୱାଦେ ଜନ୍ମିବାର ||
ଭାବ ବୋଲିଣ ତାକୁ କହି | ଅଙ୍କୁର ଶୁଣ ମନଦେଇ ||
ସେ ଭାବ ଜାଣ ପ୍ରେମ ଭକ୍ତି | ଚତୁର୍ଥ ଅଂଶର ଆକୃତି ||
ଉଦୟ ହୁଅନ୍ତି ଚିତ୍ତେଣ | ସେ ଅଂଶ ରୁଚିମାନଙ୍କେଣ ||
ମସୃଣ କରନ୍ତି ଚିତ୍ତକୁ | ତେଣୁ ସେ ଚିତ୍ତ ବିକାରକୁ ||
ଭାବ ବୋଲିଣ ହାଦେ ଜାଣ | ପ୍ରେମ ଅଙ୍କୁର ସେଟି ପୁଣ ||
ସେ ଯୋନତଲେ ଅଛି ରହି | ପ୍ରେମ ପ୍ରଥମାବସ୍ଥା ଯେହି ||
ଭାବ ବୋଲିଣ ତାହା ଜାଣ | ଅଙ୍କୁର କହିବାକ ଶୁଣ ||
ଯାହା ଅଛଇ ମୁହିଁ ଶୁଣି | ଭାବ ଲକ୍ଷଣ ଗୁଣ ପୁଣି ||
ନିର୍ବିକାର ଚିତ୍ତରେ ଯାର | ପ୍ରଥମେ ହୋଏ ଯେ ବିକାର ||
ଭକ୍ତି ରସ ବିଭାବ ପାଇଁ | ଭାବ ବୋଲିଣ ବୋଲି ତାହି ||
ଭକ୍ତି ରସର ଯେ ବିଭାବ | ତାହା ସୁଜନେ କର ଠାବ ||
କୃଷ୍ଣ ଆବର ଭକ୍ତଜନ | କୃଷ୍ଣର ରୂପ ଗୁଣମାନ ||
ସହାସ୍ୟ ନୃତ୍ୟ ଶିକ୍ଷା ଆଦି | ଶୃଙ୍ଗ ନୂପୁର ବେଷବିଧି ||
ବସନ୍ତ ଛନ୍ଦ ଏ ଆଦିରେ | ବିଭାବ ଭକ୍ତି ଯେ ରସରେ ||
ଏହା ଭାବନା କଲା ଚିତ୍ତେ | ବିକାର ହୁଏ ଯେ ଯୁଗତେ ||
ଭାବ ବୋଲିଣ ତାଙ୍କୁ କହି | ଏଥୁ ଶୁଣିମା ମନ ଦେଇ ||
ଭାବ ଜନମ ହୋଇନ୍ତେ ଚିତ୍ତେ | ତକ୍ଷଣେ ବାହ୍ୟରେ ଯୁଗତେ ||
ଭାବକୁ ହୋଇ ଅନୁଗତ | ଅଷ୍ଟ ସାତ୍ତ୍ୱିକ ହୋଇନ୍ତି ଜାତ ||
କହିବି ତହିଁର ଲକ୍ଷଣ | ତା ଏବେ ଏକେ ଏକେ ଶୁଣ ||
ପ୍ରଥମେ ସ୍ତମ୍ଭ ଜାତ ହୁଏ | ସ୍ତମ୍ଭ ପ୍ରାୟେକ ହୋଇ ରହେ ||
ଦ୍ୱିତୀୟେ ସ୍ୱେଦ ହୁଏ ଜାତ | ସର୍ବାଙ୍ଗ ଯାକଇ ଯୁଗତ ||
ତୃତୀୟେ ପୁଲକଇ କାୟ | ଦିଶେ କଦମ୍ବପୁଷ୍ପ ପ୍ରାୟ ||
ଚତୁର୍ଥେ ସ୍ୱର ଭଙ୍ଗ ପୁଣି | କହନ୍ତି ଗଦ ଗଦ ବାଣୀ ||
ପଞ୍ଚମେ କମ୍ପ ଜାତ ହୁଏ | ବାତେ କଦଳୀ ଦଳ ପ୍ରାୟେ ||
ଷଷ୍ଠରେ ଦିଶନ୍ତି ବିବର୍ଣ୍ଣ | ତେଜ ନିଜ କାନ୍ତି ଯାଇଣ ||
ସପତମରେ ଅଶ୍ରୁ ଜାତ | ନେତ୍ରରୁ ବହଇ ଯୁଗତ ||

ଅଷ୍ଟମେ ହୁଅନ୍ତି ଅଜ୍ଞାନ । ଭକ୍ତି ରସରେ ହରେ ମନ ॥
ପଡ଼ନ୍ତି ଶୁଷ୍କ କାଷ୍ଠ ପ୍ରାୟ । କେତେହେଁ କାଳେ ଜ୍ଞାନ ପାଏ ॥
ଏ ଭାବେ ଆଠ ଯେ ପ୍ରକାର । ସାତ୍ତ୍ୱିକ ଜାତ ତାହାଙ୍କର ॥
ତାହାଙ୍କ ଭାବେ ଭକ୍ତି ଜାତ । ତାଙ୍କର ହୁଏ ଏ ଯୁଗତ ॥
କାର ବା ହୁଏ ଦୁଇ ଚାରି । ଭାବ ଚିତ୍ତକୁ ଅନୁସରି ॥
ଏ ଯେ ଶ୍ରୀକୃଷ୍ଣ ଭାବ ଭକ୍ତି । ତାଙ୍କର ଇଚ୍ଛାରେ ହୁଅନ୍ତି ।
ଭକତ ଅଦୃଷ୍ଟ ବଶରେ । ଆସ୍ୱାଦ କରନ୍ତି ଚିତ୍ତରେ ।
ସାଧନ ଭକ୍ତିର ଯୁଗତ । ଭାବ ହୁଅନ୍ତି ଜାଣ ଜାତ ॥
ଭାବରୁ ପ୍ରେମ ଜାତ ହୋଇ । ଭକ୍ତି ଏ ଭାବେ ସମ୍ଭବଇ ॥
ଯେ ହାଦେ ଭାବର ଲକ୍ଷଣ । ରତି ବୋଲଣ ତାହା ଜାଣ ॥
ନାଟକେ ଅଛି ଭିନ୍ନ ଭିନ୍ନ । ରତି ଭାବର ଯେ ଲକ୍ଷଣ ॥
ଭକ୍ତି ଗ୍ରନ୍ଥରେ ଭିନ୍ନ ନାହିଁ । ଏକ କରଣ ଛନ୍ତି କହି ॥
ଏ ଯେନ କୃଷ୍ଣଠାରେ ରତି । ହେଲେଟି ବୋଲିବା ଭକତି ॥
କୃଷ୍ଣ ଚରଣେ ଦେଇ ମନ । ଭାବ ଯେ ଭକ୍ତିର ଲକ୍ଷଣ ॥
କହିଲା ଶିଶୁ ରାମ ଦାସ । ଭାଷା ଗୀତରେ ଭକ୍ତି ରସ ॥

ଇତି ଶ୍ରୀ ହରିଭକ୍ତିଚନ୍ଦ୍ରୋଦୟେ ଭାବ ଭକ୍ତି ଲକ୍ଷଣ
ବର୍ଣ୍ଣନେ ନାମ ଚତୁର୍ଦ୍ଦଶୋଽଧ୍ୟାୟ ।

---

## ୧୫ଶ ଅଧ୍ୟାୟ ।
### ( ଦ୍ୱିବିଧ ଭାବ ଭକ୍ତି )

ସୁଜନେ ସାବଧାନ କରି । ଶ୍ରୀକୃଷ୍ଣ ଭକ୍ତିର ବିସ୍ତର ॥
ପ୍ରଥମେ କହିଲି ଯୁଗତ । ତିନି ପ୍ରକାରେ ଭାବ ଜାତ ॥
ଅତ୍ୟନ୍ତ ଭକ୍ତି ସାଧନରୁ । ଅବର ଶ୍ରୀକୃଷ୍ଣ କୃପାରୁ ॥
ଭକ୍ତ କୃପାରୁ କରି ପୁଣ । ଯେ ହାଦେ ଭକ୍ତିର ଜନମ ॥
ତା ଏବେ ଏକ ଏକ କରି । ସୁଜନେ ଶୁଣିମା ବିସ୍ତରି ॥
ଭକ୍ତି ସାଧନ୍ତି ଯେ ହୁଅନ୍ତି । ଯେ ଭକ୍ତି ନିରତେ ସାଧନ୍ତି ॥
କ୍ଷଣେହେଁ ନ ଛାଡ଼ନ୍ତି ଜାଣ । ନିରତେ କରନ୍ତି ସାଧନ ॥
ଅତ୍ୟନ୍ତ ସାଧନ୍ତି ତାଙ୍କର । ଚିତ୍ତ ଯେ ହୁଅଇ ନିର୍ମଳ ॥
ସେ ଚିତ୍ତେ କୃଷ୍ଣର ସ୍ୱରୂପ । ଧ୍ୟାନରେ ହୁଅନ୍ତି ଲୋଲୁପ ॥

ଯେ ଗୁଣ ଯଶ ଗାଥାମାନ । ତାହା ଯେ କରନ୍ତି ଗାୟନ ॥
ସାଧୁଙ୍କ ଗୋଷ୍ଠୀରେ ଯୁଗତ । ଶୁଣନ୍ତି ଶ୍ରୀକୃଷ୍ଣ ଚରିତ ॥
ଏ କଥାମାନ ଯେ ଯୁଗତେ । ଆସ୍ୱାଦ କରନ୍ତେଣ ଚିତ୍ତେ ॥
ଏଥିରୁ ହୁଏ ଭାବ ଜାତ । ସାଧୁଙ୍କ ଚିତ୍ତରେ ଯୁଗତ ॥
ସାଧନ କାରଣକୁ ଯାଇ । କୃଷ୍ଣରେ ମନ ଉପୁଜଇ ॥
ଅଶ୍ରୁ ପୁଲକ ଆଦିକର । ସାତ୍ତ୍ୱିକେ ହୁଅନ୍ତି ତାଙ୍କର ॥
ଏ ଭାବେ ଭାବର ଜନମ । ସାଧନୁ ହେଲା ବୋଲି ଜାଣ ॥
କୃଷ୍ଣ ପ୍ରସାଦୁଁ ଯେ ହୁଅଇ । ତାହା ଶୁଣିମା ମନ ଦେଇଁ ॥
ସେ କେନ ପ୍ରକାରଟି ଜାଣ । ଆଜ୍ଞା ଆବର ବିଲୋକନ ॥
ଆଜ୍ଞାରେ ହୋଇଛି ଯାହାର । ତା ଏବେ ସାବଧାନ କର ॥
ବ୍ରହ୍ମାଙ୍କ ଗୃର ଯେ ନନ୍ଦନ । ସେ ଯେ ଅଛନ୍ତି ସର୍ବେ ସମ ॥
ସାଧନ ନ ଥିଲା ଯୁଗତ । ଆଜ୍ଞାରେ ହେଲା ଭାବଜାତ ॥
ପ୍ରଥମେ ଭାବହିଁ ହୋଇଲା । ଏମନ୍ତ ଅଛଇ ଶୁଣିଲା ॥
ଆବର ମୁନି ଶୁକ ଦେବ । ଆଜ୍ଞାରେ ଜାତ ହେଲା ଭାବ ॥
ଏ ଭାବେ ଆଜ୍ଞାରେ ବହୁତ । ଭାବ ହୋଇଛି ଜାଣ ଜାତ ॥
ଆଲୋକ ଦାନରୁଟି ଜାଣ । ଭାବର ଜାତ ହେବା ଶୁଣ ॥
ମଥୁରାବାସିମାନଙ୍କର । ସାଧନ ନ ଥିଲା ଆବର ॥
କୃଷ୍ଣଙ୍କୁ ଦେଖନ୍ତେ ଯୁଗତ । କୃଷ୍ଣ କଟାକ୍ଷ ହୋନ୍ତେ ଜାତ ॥
ଆଲୋକ ପ୍ରସାଦରୁ କର । ଭାବ ହୋଇଲା ସବୁଙ୍କର ॥
ଭାବେ ବୁଡ଼ିଲା ତାଙ୍କ ମନ । କଟାକ୍ଷେ ହୋଇଲା ଅଜ୍ଞାନ ॥
ଏ ଯେନ ଅଲୋକରୁ ଜାତ । ଭାବ ଯେ ହୁଅଇ ଯୁଗତ ॥
ଅଦ୍ୟାପି ଶ୍ରୀମୂର୍ତ୍ତି ଦର୍ଶନ । କରିବା ଠାରେ ହାଦେ ଜାଣ ॥
ବିକାର ହୁଏ ଚିତ୍ତେ ଯାର । କୃଷ୍ଣର ଦେଖିଣ ଆକାର ॥
ଅଶ୍ରୁ ପୁଲକ ହାଦେ ହୋଇ । ଭାବ ବୋଲିଣ ଜାଣ ତାହି ॥
ଏ ଭାବେ କୃଷ୍ଣ କୃପା ଯେନ । ଭାବଜନମ ହୁଏ ପୁଣି ॥
ଭକତ ପ୍ରସାଦରୁ ପୁଣ । ଭାବର ଜାତ ହେବା ଶୁଣ ॥
ନାରଦ ଋଷିଙ୍କ ପ୍ରସାଦେ । ଭାବ ହୋଇଲା ପ୍ରହ୍ଲାଦେ ॥
ଅଦ୍ଭୁତ ଅଛଇଁ ଯେ ପୁଣି । ସ୍କନ୍ଦ ପୁରାଣର ଏ ବାଣୀ ॥

ବନେ ନାରଦ ମୁନିବର । ଦେଖିଲେ ଏକଇ ଶବର ॥
ବଡ଼ିନେ ଜୀବ ମାରୁଥିଲା । ଋଷିଙ୍କି ଦେଖିଣ ରହିଲା ॥
ମୁନି ତାହାକୁ ଦେଖିକରି । ତାଠାରେ ଦୟା ଯେ ଆଚରି ॥
ବୋଇଲେ କୃଷ୍ଣଭକ୍ତି କର । ଏ ପାପ କଥା କର ଦୂର ॥
ଋଷି ଆଜ୍ଞାରେ ଯେ ଲୁବ୍ଧକ । ତେଜିଲା କୋଦଣ୍ଡଶାୟକ ॥
ଆନନ୍ଦେ ଅଶ୍ରୁଜଳ ବହେ । ପୁଲକ ହୋଇଲା ତା କାୟେ ॥
ଏ କଥା ଭାଣନ୍ତି ଯୁଗତ । ବ୍ୟାଧର ହେଲା ଭାବ ଜାତ ॥
ଋଷି କୃପାରୁ କର କାଣ । ଭକ୍ତି ଲଭିଲେ ତତକ୍ଷଣ ॥
ଏ ଭାବେ ବହୁତ ଅଛଇ । ଭକ୍ତ କୃପାରୁ ଭାବ ହୋଇ ॥
ଏ ତିନି ପ୍ରକାରୁଁ ଟି ଜାଣ । ଭାବ ଜନମ ହୁଏ ପୁଣ ॥
ଆହୁରି ଶୁଣିମା ବଚ୍ଚର । ସୁଜନେ ସାବଧାନ କରି ॥
ଯାହାର ସାଧନହିଁ ନାହିଁ । କୃଷ୍ଣର କୃପାହିଁ ନ ଥାଇଁ ॥
ଭକ୍ତ କୃପାହିଁ ନାହିଁ ଜାଣ । ଏମନ୍ତେ ଭାବର ଜନମ ॥
ତାଙ୍କର କ୍ଷତ ଯେ ନ ଥାଇ । ଅଦ୍ଭୁତ ହୋଇଣ ହୁଅଇ ॥
ତାଙ୍କର ଶୁଣିମା ବଚ୍ଚର । ସେ ବଡ଼ ଭାଗ୍ୟବନ୍ତ ନର ॥
ପୂର୍ବଜନ୍ମରେ କୃଷ୍ଣ ଭକ୍ତି । ଯାହା ସାଧନ କରିଥାନ୍ତି ॥
ତାଙ୍କର ସେ ସାଧନମାନ । କ କ ପ୍ରକାରେ ହୁଏ ବିଘ୍ନ ॥
ସୁଙ୍କତ ହୋଇ ସେ ଯେ ଥାନ୍ତି । ଏ ଜନ୍ମେ ପ୍ରକାଶ ହୁଅନ୍ତି ॥
ଲୋକରେ ହୋଇ ଚମତ୍କାର । ଭାବ ପ୍ରକାଶ ହୁଏ ତାର ॥
ସେ ସବୁଠାରୁ ଯେ ଅଧିକ । ଏମନ୍ତ ଜାଣିବ ବିବେକ ॥
ଏହିସାଧନ ହେଲା ବୋଲି । ସୁଜନେ ଜାଣିବ ଅକଳି ॥
ଆହୁରି ଭାବର ଜନମ । ସୁଜନେ ସାବଧାନେ ଶୁଣ ॥
ଭାବ ଅଭ୍ୟାସୁ ଭାବ ଜାତ । ଆବର ହୁଅନ୍ତି ଯୁଗତ ॥
ସେ ଭାବ ଅଭ୍ୟାସ ବିଧାନ । ପଛେ କହିବା ତାହା ଜାଣ ॥
ସାଧନ ଭେଦ ସେ ଯୁଗତ । ସାଧୁ ସଙ୍ଗରୁ ହୁଏ ଜାତ ॥
ଏବେନ ଭାବ ଜାଣ ଏହି । ତିନି ପ୍ରକାରୁ ଜାତ ହୋଇ ॥
ସାଧନୁ ହୁଅନ୍ତି ବହୁତ । କୃପାରୁ ଅଳପ ଯୁଗତ ॥
ଯେହି ସାଧଇ ତାର ହୋଇ । କୃପା ଯେ ଭାଗ୍ୟବଶେ ଥାଇ ॥

ଏ ଭାବେ କୃଷ୍ଣ ଭାବ ଭକ୍ତି । ଭକ୍ତିରୁ ଜାତ ଯେ ହୁଅନ୍ତି ॥
ସାଧୁମାନଙ୍କ ହୃଦୟରେ । ଜାତ ହୁଅନ୍ତି ଏ ପ୍ରକାରେ ॥
ଯାହାର ଥାଇ ଅତିଭାଗ୍ୟ । ତାଠାରେ କୃଷ୍ଣ ଅନୁରାଗ ॥
ବହୁତ କାଳର ବାସନା । ଶ୍ରୀକୃଷ୍ଣ ଚରଣ ଭାବନା ॥
ପ୍ରକାଶ ହୁଏ ଏ ଲୋକରେ । ଜାଣିବ ତାହାଙ୍କ ଠାବରେ ॥
ଭାବୁଁ ଯେ ଭକ୍ତି ହୁଏ ଜାତ । ଏହା ଜାଣିମ କର ତତ୍ତ୍ୱ ॥
ଯେ ସେ କାମନା ନ କରନ୍ତି । ମୁକ୍ତିକି ମନେ ନ ଇଚ୍ଛନ୍ତି ॥
ନିଷ୍କାମ ଭକ୍ତି କୃଷ୍ଣ ପାଦେ । ଯେ ଜାଣ କରନ୍ତି ସାନନ୍ଦେ ॥
ତାଙ୍କର ଭାବ ଜାତ ଜାଣ । ସାମାନ୍ୟ ନୁହନ୍ତି ସେ ଜନ ॥
ଶ୍ରୀକୃଷ୍ଣ ଚରଣ-ସାରସ । ଚିନ୍ତି କହଇ ଭୀମ ଦାସ ॥

ଇତି ଶ୍ରୀ ହରିଭକ୍ତିଚନ୍ଦ୍ରୋଦୟେ ଭାବ ଭକ୍ତି ନିବଧ ବର୍ଣ୍ଣନେ
ନାମ ପଞ୍ଚବିଂଶୋଽଧ୍ୟାୟଃ ।

---

## ୨୬ଶ ଅଧ୍ୟାୟ ।

### ( ଅନୁଭାବ ନବ ଲକ୍ଷଣ )

ଶୁଣ ଜନେ କର ସାବଧାନ । ଶ୍ରୀ ଭାବ ଭକ୍ତିର ବିଧାନ ॥
ଭକ୍ତଙ୍କ ଠାବରେ ଯୁଗତ । ଭାବ ହୁଅନ୍ତି ଜାଣ ଜାତ ॥
ସେ ଭାବ ଭାବନା ଚିତ୍ତରେ । ନିରତେ ହୁଅନ୍ତି ମନରେ ॥
ସେ ଭାବୁଁ ଅନୁଭାବ ଜାତ । ସେ ଭାବେ ହୁଅନ୍ତି ଯୁଗତ ॥
ସେ ଅନୁଭାବ ଏବେ ଜାଣ । ନବ ପ୍ରକାର ହୁଏ ପୁଣ ॥
କ୍ଷାନ୍ତି ବୋଲିଣ ପ୍ରଥମରେ । ଅବ୍ୟର୍ଥ କାଳ ଦ୍ୱିତୀୟରେ ॥
ବିରକ୍ତି ତୃତୀୟରେ ଜାଣ । ମାନଶୂନ୍ୟତା ଚତୁର୍ଥେଣ ॥
ପଞ୍ଚମେ ଆଶାବନ୍ଧ କହ । ଷଷ୍ଠରେ ସମୁତ୍କଣ୍ଠା ହୋଇ ॥
ସପ୍ତମେ ରୁଚି ନାମ ଗାନେ । ଆସକ୍ତି ଜାତ ଯେ ଅଷ୍ଟମେ ॥
ନବମେ ଶ୍ରୀକୃଷ୍ଣ ବସତି । ସ୍ଥଳରେ ହୁଏ ତାଙ୍କ ମତି ॥
ଏମନ୍ତ ଭାବ ଜାଣ ନବ । ପ୍ରକାରେ ହୁଏ ଅନୁଭାବ ॥
ଭାବ ଜନମ ଭକ୍ତଠାରେ । ଏ ଜାତ ହୁଅନ୍ତି ବେଭାରେ ॥
ଏହା ଯେ ଏକ ଏକ କରି । କହିବି ଶୁଣିମା ବିସ୍ତର ॥
ଏଥିରୁ ଇସେ ଅବା ଲକ୍ଷଣ । ଯେ ସେ ଭଗତ ତାହା ଶୁଣ ॥

କ୍ଷାନ୍ତ ବୋଲଣ ହାଦେ ଯେହ । ତାର ଲକ୍ଷଣ ଜାଣ ଏହ ॥
କ୍ଷୋଭ ପ୍ରାପତ ହୋଇଥାନ୍ତେ । କ୍ଷୋଭ ନୁହଇ ତାଙ୍କ ଚିତ୍ତେ ॥
ନରପତି ଭକ୍ତେ ଯଦୁପତି । ଯେମନ୍ତ ପରୀକ୍ଷ ନୃପତି ॥
ମରଣ ହେବ ସାତଦିନେ । କ୍ଷୋଭ ନୋହିଲା ତାଙ୍କ ମନେ ॥
ଭାବ ଯେ ହୋଇଥିଲା ଜାତ । ସେହ ଭାବରେ ଦେଲେ ଚିତ୍ତ ॥
ଶ୍ରୀ ଭାଗବତ ଯେ ପୁରାଣ । ଶୁଣିଲେ ଅକ୍ଷୋଭ ହୋଇଣ ॥
ଏହାଙ୍କୁ କ୍ଷାନ୍ତ ବୋଲି କହ । ଭାବ ଭକ୍ତିରୁ ଏ ହୁଅଇ ॥
ଅବ୍ୟର୍ଥ କାଳ ଏବେ ଶୁଣ । ତାହାର ଯେ ଅବା ଲକ୍ଷଣ ॥
ବ୍ୟର୍ଥ କରଣ କାଳମାନ । କ୍ଷଣେହେଁ ନ କରନ୍ତି ଜାଣ ॥
ଶ୍ରବଣ କୀର୍ତ୍ତନ ଆଦିରେ । କାଳ ନିଅନ୍ତି ସାଧନରେ ॥
ନିରତେ ଅଶ୍ରୁନେତ୍ର ହୋଇ । ରୋମ ପୁଲକ ଥାନ୍ତି ହୋଇ ॥
ଅବ୍ୟର୍ଥ କାଳ ତାଙ୍କୁ ଜାଣ । ଭାବରୁ ଜାତ ଏହୁ ପୁଣ ॥
ବିରକ୍ତି ବୋଲି ଜାଣ ଯେହ । ତାଙ୍କ ଲକ୍ଷଣ ଶୁଣ ଏହ ॥
ଜେତାଙ୍କ ଇନ୍ଦ୍ରିୟ ଯେ ଗଣ । ତାହାର ଯେବା ପ୍ରୟୋଜନ ॥
କର୍ଣ୍ଣରେ ସୁସ୍ୱର ଶୁଣିମା । ଜିହ୍ୱାରେ ସୁସ୍ୱାଦ ଜାଣିମା ॥
ଚକ୍ଷୁରେ ଯେବା ଦରଶନ । ଏହି ଆଦିରେ ଯେତେ ଜାଣ ॥
ସେହି ଇନ୍ଦ୍ରିୟମାନଙ୍କୁହିଁ । ସେ କଥାମାନ ନ ରୁଚଇ ॥
ତହିଁରେ ହୁଅଇ ବିକାର । ତାହାରି ଇଚ୍ଛାଏ ତାଙ୍କର ॥
ଯେ ସୁତ ମାତ ତାତ ନାରୀ । ଧନ ମନ୍ଦିର ଆଦି କରି ॥
ଜ୍ଞାତଭାବେ ଗଲା ତେଜି । ଯେମନ୍ତ ବିଷ୍ଠାକୁ ନ ଭଜି ॥
ତା ବିରକତ ଭକ୍ତି ଜାଣି । ଭାବରୁ ଜାତହୁଏ ପୁଣି ॥
ମାନଶୂନ୍ୟତା ବୋଲି ଯାହା । ସୁଜନେ ଶୁଣିମାକ ତାହା ॥
ସେ ବଡ଼ ଲୋକ ହୋଇଥାନ୍ତି । ଶ୍ରୀକୃଷ୍ଣ ଭକ୍ତି ଉପୁଜାନ୍ତି ॥
ରଜାମାନଙ୍କ ଚୂଡ଼ାମଣି । ସେ ହାଦେ ହୋଇଥିଲେ ପୁଣି ॥
ମାନ ନ କରନ୍ତି କାହିଁରେ । ଭିକ୍ଷା ମାଗନ୍ତି ଶତ୍ରୁ ପୁରେ ॥
ଏ ମାନଶୂନ୍ୟଟି ଭକତ । ଭାବ ଭକ୍ତିରୁ ହୁଏ ଜାତ ॥
ଏଥିଉତ୍ତାରୁ ଆଶାବନ୍ଧ । ଲକ୍ଷଣ ଶୁଣିମା କୋବିଦ ॥
ଯେତେକ ଶୁଭାଶୁଭକର୍ମ । କାହିଁ ନ ଥାଇ ତାଙ୍କ ଯମ ॥

କୃଷ୍ଣ ଚରଣେ ଦେଇ ଆଶ । ନିରନ୍ତେ ଦେଇଣ ମାନସ ॥
କୃଷ୍ଣଙ୍କୁ ପାଇବା କାମନା । ନିରତେ କରନ୍ତି ଭାବନା ॥
ସେହି କଥାରେ କରି ଆଶ । ବଢ଼ଇ ବହୁତ ମୂହାସ ॥
ଏଥୁ ନ ଥାଇ ମନେ ଆନ । ଏହି କଥାହିଁ ତାଙ୍କ ଧନ ॥
ଏହାଙ୍କୁ ଆଶାବନ୍ଧ କହି । ଏ ଭାବ ଭକ୍ତିରୁ ହୁଅଇ ॥
ଏଥିଉତ୍ତାରୁ ଏବେ ଶୁଣ । ଯେ ସେ ଉତ୍କଣ୍ଠାର ଲକ୍ଷଣ ॥
ଶ୍ରୀକୃଷ୍ଣ ଭକ୍ତିର ବିସ୍ତର । ସେ କଷ୍ଟେ କଥା ତାହାଙ୍କର ॥
ତହିଁରେ ହୋଇଣ ଲୁବୁଧ । ନିଶି ଦିବସେ ସେହି ସଧ ॥
ଉତ୍କଣ୍ଠା ହୋଇ ନିରନ୍ତରେ । ସେହି ବିସ୍ତର ଏକା କରେ ॥
ଏହାଙ୍କୁ ସମୁତ୍କଣ୍ଠା କହି । ଏଥୁ ଶୁଣିବା ମନ ଦେଇ ॥
ଯେ ଜାଣ ରୁଚି ନାମ ଗାନେ । ତାହା ଶୁଣିମା ସାବଧାନେ ॥
କୃଷ୍ଣର ନାମ ଗାଥାମାନ । ନିରତେ କରନ୍ତି ଗାୟନ ॥
ବଚନ ଗଦଗଦ ହୁଏ । ଦେହ ପୁଲକ ଅଶ୍ରୁ ବହେ ॥
ନିରତେ କୃଷ୍ଣ ନାମ ଗାନ୍ତି । ସେ ଭାବୁଁ ଆନ ନ ଜାଣନ୍ତି ॥
ଏ ନାମ ଗାନ ରୁଚି ଜାଣ । ଭାବରୁ ହୁଏ ଉତପନ ॥
ଏ ତହୁଁ ଗୁଣ ଯେ ଆଖ୍ୟାନେ । ଆସନ୍ତି ଶୁଣ ସାବଧାନେ ॥
କୃଷ୍ଣର ଯେତେ ଗୁଣମାନ । ନିରତେ ବିସ୍ତରନ୍ତି ମନ ॥
ଆସ୍ୱାଦ କରନ୍ତି କହନ୍ତି । ଏ ଗୁଣ ଆଖ୍ୟାନେ ଆସନ୍ତି ॥
ଶ୍ରୀକୃଷ୍ଣ ବସତି ସ୍ଥାନେଣ । ପ୍ରାପ୍ତି କାମନା ଏବେ ଶୁଣ ॥
ଗୋପ ଦ୍ୱାରକା ମଧୁପୁରୀ । ପୁରୁଷୋତ୍ତମ ଆଦିକରି ॥
ଯେତେକ କୃଷ୍ଣ ଲୀଳା ସ୍ଥାନ । ଅଛନ୍ତି ତହିଁ ତାଙ୍କ ମନ ॥
ବିହାର କରିବା ବିସ୍ତରେ । ଲୁବ୍‌ଧକ ହୁଏ ନିରନ୍ତରେ ॥
ଗୋପ ଦ୍ୱାରକା ମଧୁପୁରୀ । ପୁରୁଷୋତ୍ତମ ଆଦିକରି ॥
ତହିଁରେ ପ୍ରବେଶ ହୋଇବା । ସେମାନ ବୁଲିଣ ଦେଖିବା ॥
ଯେ ହାଦେ ବୋଲି ଗୋପପୁର । ଯେଉଁଠାବରେ ନନ୍ଦଘର ॥
ଯେଉଁ ସ୍ଥାନରେ ଭଗବାନ । ଥିଲେ ଅନୁଢ଼ଶାଳେ ପୁଣ ॥
ଯେଉଁ ସ୍ଥାନରେ ପୁତନାର । ଜୀବନ ଶୋଷିଲେ ଆଦର ॥
ଯେଉଁ ସ୍ଥାନରେ ଗୋପୀନାଥ । ଶକଟା ପାଦେ କଲେ ହତ ॥

ଯେଉଁଠାବରେ ତୃଣାସୁର । ନିଅନ୍ତେ ମୋଡ଼ିଲେ ତା ଶିର ॥
ଯେଉଁଠାବରେ ନନ୍ଦରାଣୀ । କୃଷ୍ଣଙ୍କୁ ବାନ୍ଧିଥିଲେ ଆଣି ॥
ଯେଉଁଠାବରେ କୃଷ୍ଣ ମାଟି । ଖାଆନ୍ତେ ଧଇଲେ ମା ଯାଚି ॥
ଯେଉଁଠାବରେ ଯୁଝି ଧରି । ଘୋଡ଼ାଇଥିଲେ ମାଏ ମାରି ॥
ଯେଉଁଠାବରେ ଭବଗ୍ରାହୀ । ଚୋରାଇ ଖାଇଥିଲେ ଦହି ॥
ଯେଉଁଠାବରେ ହୃଷୀକେଶି । ଥିଲେ ଗୋପୀଙ୍କ ଘରେ ପଶି ॥
ଯେବଣଠାବରେ ଗୁଆଳୀ । ବାନ୍ଧିଲା ଚୋର ବୋଲି କରି ॥
ବଟପ ଭାବେ ଯେଉଁଠାରେ । ଲୁଚିଣଥାନ୍ତି ବଟପିରେ ॥
ରାଧାଙ୍କୁ କରି ଯାଇ ରତ । ଯହିଁ ହୋଇଲେ କଳାଭୂତ ॥
ଯେବଣ ଠାବରେ ଗୋବିନ୍ଦ । ଧରିଣ ଥିଲେ ରାଧା ପାଦ ॥
ପଡ଼ନ୍ତେ ରାଧାର ପାଦରେ । ମାତ୍ସେ ଦେଖିଲେ ଯେଉଁଠାରେ
ପାଳିଷ୍ଠା ବାସମାନ ହରି । ଯହିଁରେ ଥିଲେ ଦୋଳ କରି ॥
ବୃନ୍ଦାବତୀଙ୍କି ଯେଉଁଠାଇଁ । ସ୍କନ୍ଧ ଉପରେ ଥିଲେ ବହି ॥
ଯେବଣଠାରେ ଘାଟୁଆଳ । ହୋଇଣଥିଲେ ନନ୍ଦବାଳ ॥
ଯହିଁରେ ହୋଇଣ ନାଉରି । ରାଧାଙ୍କୁ କରୁଥିଲେ ପାରି ॥
ଏହି ପ୍ରକାରେ ଲୀଳାମାନ । କରିବାରନ୍ତି ଯେତେ ସ୍ଥାନ ॥
ସେ ସ୍ଥାନ ମାନନ୍ତି ଯୁଗତେ । ବୁଲିଣ ଦେଖିବା ନିରତେ ॥
ଗୋପପୁରର ବୃଦ୍ଧ ନର । ମାନଙ୍କୁ ଘେନିଣ ସଙ୍ଗର ॥
ସେମାନେ ଚାଲିଥିବେ ଅଗେ । କହୁଣ ଥିବେ ସେ ସରାଗେ ॥
ତର୍ଜନୀ ଅଙ୍ଗୁଳି ଘେନିଣ । ସେ ସ୍ଥାନମାନ ଦେଖାଇଣ ॥
ତାଙ୍କର ତହୁଁ ହାଦେ ଶୁଣି । ଅମୃତ ରସ ସମ ବାଣୀ ॥
କର୍ଣ୍ଣରେ କରି ତାହା ପାନ । ଆନନ୍ଦେ ଉଚ୍ଛୁଳିବ ମନ ॥
ଘନ ଆନନ୍ଦ ଜଳଧିରେ । ନିମଗ୍ନ ହୋଇବୁ ବେଗରେ ॥
ନୟନୁ ବହୁଥିବ ନୀର । ଉଦ୍ଧତ ହେଉଥିବ ଶିର ॥
ଶରୀରେ ହୋଇବ ପୁଲକ । ଆବର ଗଦ ଗଦ ବାକ୍ୟ ॥
ଏମନ୍ତ ଭାବ କେଉଁଦିନ । ଆମ୍ଭର ହୋଇବଟି ପୁଣ ॥
ଧନ୍ୟ ସେ ଜୀବନ ଆମ୍ଭର । ଦେଖିବୁଁ କୃଷ୍ଣ ଲୀଳାପୁର ॥
ଏ ଭାବେ ବଗୃର ଯା ମତ । ସେ କୃଷ୍ଣ କୃପାର ପ୍ରାପତ ॥

ଭାବ ଭକ୍ତିରୁ ହୁଏ ଜାତ । ଏ ହାଦେ ଜାଣିମ ଯୁଗତ ॥
ଷାନ୍ତ ଆଦରେ ଏ ଯେ ନବ । ଯାହା କହିଲୁ ଅନୁଭାବ ॥
ଭାବରୁ ଜାତ ଏଯେ ପୁଣ । କହିଲା ଦାସ ହାମସେନ ॥

ଇତି ଶ୍ରୀ ହରିଭକ୍ତିଚନ୍ଦ୍ରୋଦୟେ ଅନୁଭାବୋ ନବ ଲକ୍ଷଣ ବର୍ଣ୍ଣନେ ନାମ ଷଡ଼୍‌ବିଂଶୋଽଧ୍ୟାୟ ।

## ୨୭ଶ ଅଧ୍ୟାୟ ।

( ଭାବାଭାବ ବର୍ଣ୍ଣନ )

ଏଥୁ ଅନ୍ତରେ ଶୁଣ ରସ । ଯେ ଭାବ ଭକ୍ତିର ବିଶେଷ ॥
ସୁଜନେ ସାବଧାନ କର । ଏ ହାଦେ ଶୁଣିମା ବିସ୍ତାର ॥
ଯେତେ ପ୍ରକାରେ ଭାବ ଜାତ । ଭାବର ଲକ୍ଷଣ ଯେମନ୍ତ ॥
ଭାବ ଭକ୍ତମାନଙ୍କର । ହୁଅଇ ଯେ ପୁଣି ବେଭାର ॥
ତାହାତ କଲ ସାବଧାନ । ତହିଁଭିତ୍ରୁ ଏବେ ଶୁଣ ॥
ଏ ଭାବ ଯେଉଁ ଭକ୍ତଠାରେ । ପ୍ରକାଶ ନୁହନ୍ତ ବେଭାରେ ॥
ସାମାନ୍ୟେ କହିବ ବିସ୍ତର । ଯାହା ଜାଣିବ ହେତୁ କର ॥
ଶ୍ରୀକୃଷ୍ଣ ଭାବ ଭକ୍ତି ଯହିଁ । ସେ ଜାଣ ସାମାନ୍ୟ ନୁହଇ ॥
ଯା କରି ଅତ୍ୟନ୍ତ ଗୁପତ । ଭକ୍ତେ ନ ଦିଅନ୍ତି ଅଚ୍ୟୁତ ॥
ସେ ଭାବ ଭକ୍ତି ହାଦେ ଜାଣ । ଯେଉଁ ଭକ୍ତର ନୋହେ ଶୁଣ ॥
ଯେ ଯେ ଶ୍ରୀକୃଷ୍ଣ ଭକ୍ତ ଜନେ । କାମନା ଯାର ଜାଣ ମନେ ॥
କାମନା ମନେ ଧରିଥାନ୍ତି । ଭକ୍ତି ଯେ ସାଧନ କରନ୍ତି ॥
କେ ଧର୍ମ ଅର୍ଥ ଚିନ୍ତା କରି । କେ କାମ ମୋହ ଯେ ବିସ୍ତରି ॥
ଏ ଆଦି କାମନାରେ ମତ । ସେଇ କରନ୍ତି ହରିଭକ୍ତି ॥
ଏ ଭାବେ ଯେତେ ଭକ୍ତ ଜାଣ । ତାଙ୍କର ଭାବ ନୋହେ ପୁଣ ॥
ତାଙ୍କର ନୋହେ ଭାବଭକ୍ତି । ବୋଲିଣ ଋଷି କହିଛନ୍ତି ॥
ଏ ହାଦେ ସହଜ ବେଭାର । ଶୁଣିମା ଏଥିର ବିସ୍ତର ॥
ଯେ ଯାହା କରନ୍ତି କାମନା । ଚିତ୍ତରେ ଥାଇ ସେ ଭାବନା ॥
ସେ ଫଳ ଇଷ୍ଟ ହାଦେ କର । ସେବା କରନ୍ତି ନିରନ୍ତର ॥
ସେ ଫଳ ବିନା ତାଙ୍କ ଚିତ୍ତେ । ରହିଣ ଥାଇ ଅବିରତେ ॥
ଫଳ ଲୁବ୍ଧେ ଧାୟି ମନ । ପ୍ରାପ୍ତି ଇଚ୍ଛାରେ ଯେହ୍ନେ ଛନ ॥

ସେ ଫଳ ପ୍ରାପତ ଯୁଗତ । ପୂର୍ଣ୍ଣ ହୁଅଇ ତାଙ୍କ ଚିତ୍ତ ॥
ସେ ଚିତ୍ତେ କର୍ମା ଭାବ-ଭକ୍ତି । ଆଉ ହୋଇବ ଉତପତ୍ତି ॥
ମୋକ୍ଷ ଆଦ୍ଧ କାମନାମାନ । ସାଧନୁ ସାଧ୍ୟ ହୁଏ ଜାଣ ॥
ଯେଂ ସେ ସାଧନୁ ସାଧ୍ୟ ହୋଇ । ଭ୍ରବର ଭେଦ ତହିଁ କାହିଁ ॥
କାମନାସିଦ୍ଧ ହେଲେ ଆଉ । ଆଉ କି ଭକ୍ତିର ବଗୃର ॥
ଅବର କାମନା ଚିତ୍ତରେ । ବିକାର ଥାଇ ନିରନ୍ତରେ ॥
ଭାବତ ନିର୍ବିକାର ଚିତ୍ତେ । ଜନମ ହୁଅନ୍ତି ଯୁଗତେ ॥
ଯେ ସେ ଅଚ୍ଛନ୍ତି ସଦା ଭକ୍ତ । ଶୁଣିମା ତାଙ୍କର ଚରିତ ॥
କାମନା ନ କରନ୍ତି ମନେ । ସେମାନେ କୃଷ୍ଣର ଭଜନେ ॥
କିଛିହିଁ ଇଚ୍ଛା ନ କରନ୍ତି । ଅନୁକ୍ଷଣରେ ଭଜୁଥାନ୍ତି ॥
ଯେବଣ ନିଜ ପତିଠାରେ । ଯୁବତୀ ଭଜନ୍ତି ବେଭାରେ ॥
ଚିତ୍ତରେ ଧନ ଯେ ଯେନମା । କାମନା ନ କରନ୍ତି କି ନା ॥
ପତି ସୁଖରେ ଦେଇ ମତି । ଅନୁରାଗରେ ଭଜୁଥାନ୍ତି ॥
ସେ ଚିତ୍ତେ ଯେମନ୍ତ ପ୍ରକାରେ । ରତି ହୁଅନ୍ତି ଜାତ ଖରେ ॥
ସେହିପ୍ରକାରେଟି ଯୁଗତେ । ଭାବ ଯେ ଅକାମନା ଚିତ୍ତେ ॥
ଜାତ ଯେ ହୁଅନ୍ତି ଯୁଗତ । ସେ ସେ ବୋଲାନ୍ତି ଭାବ ଭକ୍ତ ॥
ସେ ଭକ୍ତମାନଙ୍କୁଟି ମୁକ୍ତି । ନିରତେ ଇଚ୍ଛା କରୁଥାନ୍ତି ॥
ସେ ଭକ୍ତମାନଙ୍କୁ ଲଭିଣ । କୃତାର୍ଥ ହୋଇବୁ ବୋଲିଣ ॥
ଏ ଭାବେ ମୁକ୍ତି ଇଚ୍ଛେ ଯାକୁ । ଆନ କେ ସମାନ ତାହାକୁ ॥
ସେ ଭାବ କାମନା ଚିତ୍ତରେ । ହୋଇବ ଯେବଣ ପ୍ରକାରେ ॥
ଏ ଯେନ କାମନା ଚିତ୍ତେଣ । ଭାବ ନୁହଇ ନିଶ୍ଚେ ଜାଣ ॥
ଶ୍ରୀକୃଷ୍ଣଚରଣେ ମାନସ । ଦେଇ କହଇ ଭୀମଦାସ ॥

ଇତି ଶ୍ରୀ ହରିଭକ୍ତିଚନ୍ଦ୍ରୋଦୟେ ଭାବାଭାବ ବର୍ଣ୍ଣନେ ନାମ ସପ୍ତଷଂଶୋଽଧ୍ୟାୟଃ ।

---

## ୬୮ଶ ଅଧ୍ୟାୟ ।

### ( ଭାବଭକ୍ତି ଭେଦ )

କହଇ କୃଷ୍ଣର ଚରିତ । ଯା ହାଦେ ଶୁଣନ୍ତେ ପବିତ୍ର ॥
ଭାବ ଯେ ଭକ୍ତିର ବଗୃର । କହଇ ସାବଧାନ କର ॥

ଭାବ ଆଭାସ ଯାହା କହି । ତା ଏବେ ଶୁଣ ମନଦେଇ ॥
ମୋକ୍ଷ ଆଦି କାମନାମାନ । କରନ୍ତି ଯେଉଁ ଭକ୍ତଜନ ॥
ତାଙ୍କରଠାରେ ଯେବେ ଭାବ । ଭକ୍ତିର ଲକ୍ଷଣ ଦେଖିବ ॥
ସେ ହାଦେ ଐଶ୍ୱର୍ଯ୍ୟ ଲକ୍ଷଣ । ଭାବ ଆଭାସ ବୋଲି ଜାଣ ॥
ଭାବ ଆଭାସର ବିସ୍ତର । ସେ ହୁଏ ବେନି ଯେ ପ୍ରକାର ॥
ପ୍ରଥମେ ପ୍ରତିବିମ୍ବ ହୋଇ । ଦ୍ୱିତୀୟେ ଛାୟା ବୋଲି କହି ॥
ଯେ ପ୍ରତିବିମ୍ବର ବିସ୍ତର । କହଇ ସାବଧାନ କର ॥
ଭୋଗାଦି ଇଚ୍ଛା ସେ କରନ୍ତି । କରି ଶ୍ରୀକୃଷ୍ଣ ପାଦେ ଭକ୍ତି ॥
ମୋକ୍ଷ ଇଚ୍ଛନ୍ତି ନିରନ୍ତରେ । ତାଙ୍କର ଦଇବ ବଶରେ ॥
ଯେ ହାଦେ ଭାବ ଭକ୍ତି ଜନ । ତାଙ୍କର ସଙ୍ଗ ପାନ୍ତି ଜାଣ ॥
ସେ ଭାବ ଭକ୍ତଙ୍କ ମାନସ । ହୁଅଇ ଗଗନ ସଦୃଶ ॥
ତହିଁରେ ଭାବ ଭକ୍ତି ଜାଣ । କରନ୍ତେ ଏହାଙ୍କ ଚର୍ବଣ ॥
ପ୍ରତିବିମ୍ବଇ ଭାବ ଜାଣ । ଏ ଭାବ ଅଟଇ ଯେ ପୁଣ ॥
ଭାବର ଲକ୍ଷଣ ଯେତେକ । ସାମାନ୍ୟ ହୁଏଟି ତେତେକ ॥
ତା ପ୍ରତିବିମ୍ବ ବୋଲି କହି । ଭାବ ଭକ୍ତିରୁ ସଂକ୍ରମଇ ॥
ଛାୟା ବୋଲଣ ଜାଣ ଯାହା । ସାବଧାନରେ ଶୁଣ ତାହା ॥
ଯେ ମୋକ୍ଷକାମୀ ଭକ୍ତଜନ । କରନ୍ତି ଭକ୍ତି ଯେ ସାଧନ ॥
ସେ ଭକ୍ତି ସାଧନୁ ଯୁଗତ । ଆବର ଭାବ ଯେ ଭଗତ ॥
ଆବର ଯାହା କାଳମାନ । ଯେ ପୁଣ୍ୟକ୍ଷେତ୍ର ଆଦି ଜାଣ ॥
ଏହାଙ୍କ ସମାଗମ ପାଇଁ । ଅନୁସଙ୍ଗିକା ଜାଣ ହୋଇ ॥
ଭାବର ଛାୟା ହୁଏ ଉଦେ । ଭାଗ୍ୟବଶରୁ ତାଙ୍କ ହୃଦେ ॥
ମନୁଷ୍ୟ ଦେହର ଛାଇର । ଅନ୍ତର ଯେତେଟି ଆବର ॥
ସେହି ପ୍ରକାରେ ଭାବ ଛାଇ । ଅନ୍ତର ଜାଣିମ ଅନାଇଁ ॥
ଧନକୁନ୍ଦନ ଯେ ତାଙ୍କର । ମଙ୍ଗଳ ହୁଅଇ ଅପାର ॥
ଏ ହାଦେ ଛାଇ ବୋଲି ଜାଣ । ଭାବ-ଭକ୍ତିରୁ ହୁଏ ପୁଣ ॥
ଏ ହାଦେ ପ୍ରତିବିମ୍ବ ପାଇଁ । ବେନିପ୍ରକାରେ କହିଲଇଁ ॥
ଭାବ ଆଭାସ ଜାଣ ଏହୁ । ଭାବରୁ ସଂକ୍ରମନ୍ତି ଯହୁଁ ॥
ଯେ ହାଦେ ଭାବ ଭକ୍ତି ଜନ । ତାଙ୍କର ସଙ୍ଗରୁ କାରଣ ॥

ସେ ଯେବେ ଅନୁଗ୍ରହ କରେ । ତହୁଁ ଏ ହୁଅନ୍ତି ବେଭାରେ ॥
ଶୁକ୍ଳପକ୍ଷ ଶଶୀ ଜାଣି । କ୍ରମେ ବଢ଼ନ୍ତି ଏହୁ ପୁଣି ॥
ଏ ପୁଣ ତାହା ଅନୁସର । ଶ୍ରୀକୃଷ୍ଣ ଭକ୍ତି ଯନ୍ତ୍ର କର ॥
ଭାବ ଆଭାସରୁ ଯୁଗତ । ତାଙ୍କର ଭାବ ହୁଏ ଜାତ ॥
ଋଷି ଅଛନ୍ତି ଏହା କହି । ଭାବ ଆଭାସୁଁ ଭାବ ହୋଇ ॥
ଆହୁର ସାବଧାନ କର । ଏଥିର ଅଛଇ ବିସ୍ତର ॥
ଯାର ଆଭାସ ହୋଇଥାଇ । ସେ ପୁଣି ଭାବ ଭକ୍ତଠାଇଁ ॥
କାହିଁତେ ଅପରାଧ କରେ । ପାପିଷ୍ଠ ଅଦୃଷ୍ଟବଶରେ ॥
ତାଙ୍କର ଭାବ ଯେ ଆଭାସ । ନାଶ ହୁଅନ୍ତି ଅବଶ୍ୟ ॥
ତାଙ୍କର ସଙ୍ଗୁ ହୋଇଥାନ୍ତି । ତାହାଙ୍କ ଅପରାଧେ ଯାନ୍ତି ॥
କୃଷ୍ଣପକ୍ଷରେ ଶଶୀ ପ୍ରାୟେ । କ୍ରମେ ହୁଅନ୍ତି ସବୁ କ୍ଷୟେ ॥
ତାଙ୍କର ନୁହେ ଭକ୍ତି ପୁଣି । ସାଧୁଙ୍କ ଅପରାଧ ଯେଣି ॥
ଏ ଯେଣକର ସାଧୁଜନ । ଯେ ସେ ଭାବ ଭକତଜନ ॥
ତାଙ୍କର ଚରଣ ଯେ ବେନି । ମସ୍ତକେ ବହ ଯେ କରେ ଯେଣି ॥
ତାଙ୍କ ଆଜ୍ଞାକୁ ଅନୁସର । ନିରତେ ଥିବ ସେବା କର ॥
ତାଙ୍କର ସଙ୍ଗ ଯେ ନିରତ । ହୋଇଣଥିବ ଅବିରତ ॥
ତହୁଁ କେ ବଡ଼ ନୋହେ ଜାଣ । ତା ସଙ୍ଗୁ ଭକ୍ତି ହୁଏ ଜାଣ ॥
କ୍ରୁଦ୍ଧା ହୋଇ ଯେ ଭକ୍ତି ହୁଏ । ଅପରାଧରେ ନାଶ ଯାଏ ॥
ଏ ତହୁଁ ବଡ଼ ଏ ସଂସାରେ । କେ ଅଛି ବିସ୍ତର ମନରେ ॥
ଏ ଯେଣି ତାଙ୍କୁ ଅପରାଧ । କରିବା ବହୁତ ପ୍ରମାଦ ॥
ପ୍ରଥମେ ଭକ୍ତି ନାଶ ଯାଏ । ଶ୍ରୀକୃଷ୍ଣ ଦ୍ୱାରେ ଦାସ ହୁଏ ॥
ବହୁତ କଷ୍ଟ ଜୀବନରେ । ନରକେ ପଡ଼ନ୍ତି ଅନ୍ତରେ ॥
ଆହୁର ଶୁଣିମା ବିସ୍ତର । ସେ ଭାବ ଭକ୍ତମାନଙ୍କର ॥
ବିଗୁଣମାନ ହାଦେ ଥିଲେ । ହେୟ ଜ୍ଞାନ ନ କର ଭଲେ ॥
ନରସିଂହପୁରାଣେ ଯାହା । କହିଅଛନ୍ତି ଶୁଣ ତାହା ॥
ଯେ ଭକ୍ତ ଭଗବାନଠାରେ । ଭାବ ଯେ ବନ୍ଧନ୍ତି ବେଭାରେ ॥
ତାଙ୍କର ଯେ ଅବା ଦୂଷଣ । ଥାଇଣ ହୋଇଲେ ମଳିନ ॥
ଚନ୍ଦ୍ରମାନଙ୍କର ତହୁଁ । କେବେହେଁ ପରାଭବ ନାହିଁ ॥

କଳଙ୍କୀ ହେଲେ ଦ୍ୱିଜରାଜ । ତାଙ୍କୁ କି ସମ ତେଜପୁଞ୍ଜ ॥
ସେହିପ୍ରକାରେ ଭେଦ ଜାଣ । ସାଧୁସଂସାର ଲୋକମାନ ॥
ଏହି ଯେ ପୁରାଣର ବାଣୀ । ଋଷି ବଚନମାନ ପୁଣି ॥
ଭାବ ଯେ ଭକ୍ତିର ବିଗ୍ରହ । ଅଛନ୍ତି ଅନେକ ପ୍ରକାର ॥
ଗୀତରେ ଲେଖିବଇଁ କେତେ । ବହୁତ ଗ୍ରନ୍ଥ ଏ ଯୁଗତେ ॥
ତହିଁରୁ ଠିକ ଠିକ କରି । କେତୋଟି କହିଲି ବିଗ୍ରହ ॥
ଏ ଘେନ ସାଧୁଜନ ମାନ । ଏ ମୋର ଦୋଷ ଯେ ନ ଘେନ
ଏ ହରିଭକ୍ତିଚନ୍ଦ୍ରୋଦୟେ । ଏ ଅଷ୍ଟବିଂଶତି ଅଧ୍ୟାୟେ ॥
ଭାବ-ଭକ୍ତିର ଯେ ଚରିତ । ଭୀମ ଯେ ଦାସ ମହାପାତ୍ର ॥
କହିଲା କୃଷ୍ଣ ପାଦ ଭକ୍ତି । କୃଷ୍ଣ ଚରଣେ ଦେଇ ମତି ॥

ଇତି ଶ୍ରୀ ହରିଭକ୍ତିଚନ୍ଦ୍ରୋଦୟେ ଭାବାଭାବ ବିଗ୍ରହରେ
ନାମାଷ୍ଟବିଂଶୋଽଧ୍ୟାୟଃ ।

---

## ୨୯ଶ ଅଧ୍ୟାୟ ।
### ( ପ୍ରେମଭକ୍ତି ବିଗ୍ରହ )

ବନ୍ଦଇ ଶ୍ରୀକୃଷ୍ଣ ଚରଣ । ଯେ ମୁନିମାନଙ୍କର ଧ୍ୟାନ ॥
ଷଡ ଚରଣ ଧ୍ୟାନ କରି । ପଡିଛେ ଯାଉଛନ୍ତି ତରି ॥
ଷଟ ଚରଣ ତଳେ ଜାଣ । ଅଛନ୍ତି ଅଷ୍ଟାଦଶ ଚିହ୍ନ ॥
ଆବର ଛନ୍ତି ସୁରନଦୀ । ତହିଁର ନଖ କୋଣ ଭେଦି ॥
ଯେ ପାଦ ନଖ ଚନ୍ଦ୍ର କାନ୍ତି । ମୁନି ମାନସେ ଭାବୁଛନ୍ତି ॥
ଷଡ ଚକ୍ରର ଯେ ଉପରେ । ସହସ୍ର ଦଳ ପଦ୍ମପରେ ॥
ସେ ପାଦ ଯୁଗଳକୁ ଆଶ । ନିରତେ କରେ ଭୀମଦାସ ॥
ସୁଜନେ ସାବଧାନେ ଶୁଣ । ଏଥିଉତ୍ତାରୁ ଯାହା ପୁଣ ॥
ଭାବ ଯେ ଭକ୍ତିର ଉତ୍ତାରେ । ପ୍ରେମର ଭକ୍ତିଟି ବେଭାରେ ॥
ସେ ପ୍ରେମ ଭକ୍ତିରେ ବିଗ୍ରହ । କହଇ ସାବଧାନ କର ॥
ଯେ ଭାବ ଭକ୍ତି ପୁଣ ଜାଣ । ଯେ ଯେ ସମ୍ପୂର୍ଣ୍ଣ ଲକ୍ଷଣେନ ॥
ତହିଁ ସେ ସମ ତାଙ୍କୁ ବହି । ଚିତ୍ତକୁ ମସୃଣ କରଇ ॥
ନିବିଡ଼ ହୋଇ ନିରନ୍ତରେ । ରହନ୍ତି ସାଧନ ଚିତ୍ତରେ ॥
ନିମିଷେ ନ ହୁଅନ୍ତି ଆନ । ରହନ୍ତି ହୋଇଣ ନିଘନ ॥

ସେ ଭାବେ ସାଧକର ଚିତ୍ତ । ନିଶି ଦିବସେ ଉନମତ୍ତ ॥
ଆନ ଯେ ମମତା ନ ଥାଇ । କୃଷ୍ଣ ଭାବରେ ରତ ହୋଇ ॥
ଭାବର ଯେତେକ ଲକ୍ଷଣ । ନିରତେ ଧରିଥାନ୍ତି ଜାଣ ॥
ଅଶ୍ରୁ ପୁଲକ ଯେ ଅଙ୍ଗରେ । ହୋଇଣ ଥାନ୍ତି ନିରନ୍ତରେ ॥
ପ୍ରେମ ଭକତ ଜାଣ ସେହି । ଏଣୁ ଶୁଣିମା ମନ ଦେଇ ॥
ଏ ଭାବ ଭକ୍ତି ତାଙ୍କ ଚିତ୍ତେ । ଭାବ ଯେ ରହନ୍ତି ନିରତେ ॥
ସେ ଭାବ ଚିତ୍ତେ ଯାର ଜାଣ । ପ୍ରେମ ହୁଅନ୍ତି ଉତପନ ॥
ତାଙ୍କ ଲକ୍ଷଣ ଜାଣ ଏହି । ସୁଜନେ ଶୁଣ ମନଦେଇ ॥
ସେ କୃଷ୍ଣ ରସେ ହୋଇ ମତ୍ତ । ବେଳକୁ ବେଳ ଯେ ଉଦ୍ଧତ ॥
କ୍ଷୁଧା ତୃଷାହିଁ ନ ଜାଣନ୍ତି । ଆନନ୍ଦେ ସେହି ରସେ ମାତି ॥
ମାତା ପିତର ସହୋଦର । ପୁତ୍ର ଭାରିଯା ନିଜ ଘର ॥
ଧନ ସମ୍ପଦ ବଡପଣ । ଯେ ଯେ ଆପଣା ନିଜ ଧର୍ମ ॥
ଆପଣା ଦେହ ବୁଦ୍ଧି ଅନ୍ଧ । ଆଉ ସକଳ କର୍ମ ସିଦ୍ଧି ॥
ତହିଁରେ ଜ୍ଞାନ ଯେ ତାଙ୍କର । ନୁହଇ କରନ୍ତି ତା ଦୂର ॥
କୃଷ୍ଣଭାବରେ ଚିତ୍ତ ଜଡ଼ି । ନିରତେ ରହେ ତହିଁ ବୁଡ଼ି ॥
ଦେଖିଲା ନ ଦେଖେ ଲୋଚନ । ଶୁଣିଲା ନ ଶୁଣଇ କର୍ଣ୍ଣ ॥
ସ୍ୱାଦୁ ତିକ୍ତ ଯେ ଦ୍ରବ୍ୟ ଦୁଇ । ଜିହ୍ୱା ବାରି ତ ନ ପାରଇ ॥
ନାସିକା ନ ଘେନଇ ବାସ । ଦେହ ଯେ ନ ମଣେ ସ୍ପରଶ ॥
ଏଭାବେ ଇନ୍ଦ୍ରିୟଗଣର । ଯାହାର ଯେ ଅର୍ଥେ ବେଭାର ॥
ତାହା ସେ କିଛି ନ ଜାଣନ୍ତି । କୃଷ୍ଣ ପ୍ରେମରେ ଏକା ମତି ॥
ଏଥିର ଶୁଣିମା ବିସ୍ତର । ସେ ଯେ ଇନ୍ଦ୍ରିୟଗଣଙ୍କର ॥
ସବୁର ମନ ସିନା ମୂଳ । ମନରେ କରେ ଏ ସକଳ ॥
ଯେ ଯାହା ଅର୍ଥ ସେ ଘେନନ୍ତି । ଯେ ଯେଉଁ ଅର୍ଥେ ହୋଇଥାନ୍ତି ॥
ମନହିଁ ଜାଣ ନିରନ୍ତରେ । ଥାନ୍ତି ଇନ୍ଦ୍ରିୟମାନଙ୍କରେ ॥
ପ୍ରେମ ଭକ୍ତିର ଜାଣ ମନ । ସକଳ ଇନ୍ଦ୍ରିୟ ତେଜିଣ ॥
କୃଷ୍ଣ ଭକ୍ତିକୁ ସେ ଯେ ପାଇ । ଆଉ ଯେ ବାହୁଡ଼ଇ ନାହିଁ ॥
ନିଧନ ହୋଇ ନିରନ୍ତରେ । ମଜ୍ଜି ରହଇ ସେ ଭାବରେ ।
ଏଘେନ ଯେ ଇନ୍ଦ୍ରିୟଗଣ । କିଛିହିଁ ନ ଜାଣନ୍ତି ଜାଣ ॥

ପ୍ରେମ ଲକ୍ଷଣ ଜାଣ ଏହି । ଏହାକୁ ପ୍ରେମ ଭକ୍ତି କହି ॥
ସେ ପ୍ରେମଭକ୍ତଙ୍କ ପୟୂର । ନିରତେ ଲଭୁ ମୋର ଶିର ॥
ଚିନ୍ତଣ ଶ୍ରୀକୃଷ୍ଣଚରଣ । କହିଲା ଦାସ ଭୀମସେନ ॥

ଇତି ଶ୍ରୀ ହରିଭକ୍ତିଚନ୍ଦ୍ରୋଦୟେ ପ୍ରେମଭକ୍ତି ଲକ୍ଷଣ ବର୍ଣ୍ଣରେ
ନାମ ଊନବିଂଶୋଽଧ୍ୟାୟଃ ।

---

## ୨୦ଶ ଅଧ୍ୟାୟ ।

### ( ପ୍ରେମଭକ୍ତି ଦ୍ୱିବିଧ )

ସୁଜନେ ସାବଧାନ କର । ପ୍ରେମ ଭକ୍ତିର ଯେ ବର୍ଣ୍ଣର ॥
ସେ ପ୍ରେମଭକ୍ତି ଦ୍ୱାଦେ ଜାଣ । ବେଳପ୍ରକାରେ ହୁଏ ପୁଣ ॥
ଭାବ ଯେ ଭକ୍ତିରୁ ଉତ୍ଥିତ । ଶ୍ରୀକୃଷ୍ଣ ଭକ୍ତିରୁ ସମ୍ଭୂତ ॥
ଏ ଭାବେ ବେଳ ଯେ ପ୍ରକାରେ । ପ୍ରେମର ଭାବନ୍ତି ବେଭାରେ ॥
ଏଥୁଁ ଶୁଣିମା ମନଦେଇ । ଭାବରୁ ଯେଉଁ ପ୍ରେମ ହୋଇ ॥
ବଇଧି ସାଧନର ଭାବ । କୃଷ୍ଣରେ ହୁଏଟି ସମ୍ଭବ ॥
ଦ୍ୱିତୀୟେ ରାଗାନୁଗା ଜାଣ । ଭାବରୁ ଜାତ ହୁଏ ପ୍ରେମ ॥
ଏ ଦ୍ୱାଦେ ଏକ ଏକ କର । କହିବି ଶୁଣିମା ବର୍ଣ୍ଣର ॥
ପ୍ରଥମେ ବଇଧି ସାଧନେ । ଭାବର ଜାତ ହେବା ପୁଣ ॥
ଏଣେ ସାଧନ ଅଙ୍ଗ ଯେଣ । ଭକ୍ତି କରନ୍ତି ଜାଣ ପୁଣି ॥
ବାହାର ଭାବ ଯେ ଅନ୍ତରେ । ଭକ୍ତି ସାଧନ ନିରନ୍ତରେ ॥
ତାଙ୍କର ଚିତ୍ତ ଶୁଦ୍ଧ ହୋଇ । ଶ୍ରୀକୃଷ୍ଣଚରଣେ ମିଶାଇ ॥
ତାଙ୍କ ଚିତ୍ତରେ ପୁଣ ଜାଣ । ଭାବର ହୁଏ ଉତପନ୍ନ ॥
ସେ ଭାବ ଜାଣ ନିରନ୍ତରେ । ରହିନ୍ତେ ସାଧକ ଚିତ୍ତରେ ॥
ତହୁଁ ଯେ ପ୍ରେମ ଜାତ ହୋଇ । ବଇଧି ଭାବେ ପୁଣ ସେହି ॥
ତାଙ୍କ ଲକ୍ଷଣ ଏବେ ଶୁଣ । ସେ କାମେ ସେହି ଯେ ସାଧନ ॥
ନିରତେ କରନ୍ତି ସୁଗତ । ବେଳକୁ ବେଳ ଉନମତ୍ତ ॥
ସେ ବଡ଼ ବ୍ୟଗ୍ର ଯେ ଚିତ୍ତରେ । ନାମ ଡାକନ୍ତି ନିରନ୍ତରେ ॥
ହେ ରାମ କୃଷ୍ଣ ହରେ ବୋଲି । ଡାକନ୍ତି ପ୍ରଚ୍ଛଦରେ ବୁଲି ॥
ପ୍ରେମ ଅଙ୍କୁର କଳେବର । ଅଶ୍ରୁ ବହଇ ନିରନ୍ତର ॥
କୃଷ୍ଣଚରଣେ ଚିତ୍ତ ଭଜି । ଅତି ଆନନ୍ଦ ସୁଖେ ମଜ୍ଜି ॥

ହସନ୍ତି ରୋଦନ୍ତି ଗାୟନ୍ତି । ହେ କୃଷ୍ଣ ବୋଲିଣ ଡାକନ୍ତି ॥
ନୃତ୍ୟ କରନ୍ତି ନାନାଭାବେ । ସେ ଜାଣ ଉନ୍ମାଦ ସ୍ୱଭାବେ ॥
ଊର୍ଦ୍ଧ୍ୱକୁ ବେନି ବାହୁ ତୋଳି । ମଣ୍ଡଳୀ ଆକାରେଣ ବୁଲି ॥
ଗଡ଼ଗଡ଼ାନ୍ତି ଅବନୀରେ । ନାମ ଡାକନ୍ତି ଉଚ୍ଚସ୍ୱରେ ॥
ଏ ଭାବେ ପ୍ରେମ ଯେ ଲକ୍ଷଣ । ବୈଧିଭାବରୁ ଜାତ ଜାଣ ॥
ରାଗାନୁଗା ଭାବରୁ ଜାତ । ପ୍ରେମକୁ ଶୁଣିମା ଯୁଗତ ॥
ତାହା ଯେ ପ୍ରେମ ପୁରାଣରେ । କହୁଣ ଅଛନ୍ତି ବେଭାରେ ॥
ଯେ ରାଗାନୁଗାର ସାଧନ । କରନ୍ତି ଭକ୍ତି ଯେ ସାଧନ ॥
ନିର୍ମଳ କରି ନିଜ ଚିତ୍ତ । ଇନ୍ଦ୍ରିୟ କରଣ ଆୟତ୍ତ ॥
ଶ୍ରୀକୃଷ୍ଣଚରଣ ଯୁଗଳେ । ସେବା କରନ୍ତି ନିରନ୍ତରେ ॥
ଈଶ୍ୱର ବୁଦ୍ଧି ଚିତ୍ତେ ଧରି । ଦାସୀଭାବରେ ସେବା କରି ॥
ଏ ଭାବେ କରନ୍ତି ସାଧନ । ଅନ୍ତ୍ୟନ୍ତ ସାଧନରୁ ଜାଣ ॥
ଭାବ ତାଙ୍କର ଜାତ ହୋଇ । ଯେ ଭାବେ ମନ ମଗ୍ନ ହୋଇ ॥
ତହୁଁରୁ ହୁଏ ପ୍ରେମ ଜାତ । ତାର ଏ ଲକ୍ଷଣ ଯୁଗତ ॥
ଶ୍ରୀକୃଷ୍ଣ ଗୁଣ ଗାଉଥାନ୍ତି । ଅଶ୍ରୁପୁଲକ ସେ ହୁଅନ୍ତି ॥
କୃଷ୍ଣରେ ଅନୁରାଗ କରି । ନିରତେ ଥାଆନ୍ତି ଅଭୋର ॥
ସେ ବ୍ରହ୍ମଚର୍ଯ୍ୟ ଯେ ବାଞ୍ଛାରେ । ଆନରେ ମମତା ନ କରେ ॥
କୃଷ୍ଣଭାବରେ ମତ୍ତ ହୋଇ । ବୁଲନ୍ତି ଯହିଁ ଇଚ୍ଛା ତହିଁ ॥
ଚିତ୍ତ ନରୋପି କୃଷ୍ଣଠାରେ । ଥାଆନ୍ତି ନିଶି ଦିବସରେ ॥
ନ ଥାଇ ଦେହର ବିଚାର । ସୁହୃଦ ବନ୍ଧୁ ସହୋଦର ॥
କୃଷ୍ଣରେ ଦେଇ ନିଜ ପ୍ରାଣ । ପ୍ରେମ ଉଦ୍ଧତ ତାଙ୍କ ମନ ॥
ସକଳ ଚେଷ୍ଟା ତାହାଙ୍କର । ଦେଖିବା ସ୍ତ୍ରିଙ୍କ ବେଭାର ॥
ଏ ଭାବେ ପ୍ରେମ ଯେ ଯୁଗତ । ରାଗାନୁଗା ଭାବରୁ ଜାତ ॥
ଯେ କୃଷ୍ଣ ପ୍ରସାଦରୁ ପୁଣ । ପ୍ରେମ ଜନମ ତାହା ଶୁଣ ॥
ଶ୍ରୀଭାଗବତ ଏକାଦଶେ । ଶ୍ରୀମୁଖ ବାଣୀ ଯେ ବିଶେଷେ ॥
ବେଦାଧ୍ୟୟନହିଁ ନ ଥାଇଁ । ମହତ ଉପାସନା ନାହିଁ ॥
ଆବର ନ କରନ୍ତି ବ୍ରତ । ତପସ୍ୟା ନ କରେ ଯୁଗତ ॥
କେବଳ ସାଧୁଙ୍କ ସଙ୍ଗରୁ । ଆବର ଆସୁର କୃପାରୁ ॥

ମୋ ପ୍ରେମଭକ୍ତିଙ୍କ ଲକ୍ଷଣ । ମୋତେ ଲଭନ୍ତି ନିଶ୍ଚେ ଜାଣ ॥
ଏମନ୍ତ ଭଣନ୍ତି ପ୍ରଭୁ କହ୍ନି । ଏକଥା ଅନ୍ୟଥା ନୁହଇ ॥
ଏ ଯେଉଁ ପ୍ରେମରୁ ସେ ଜାଣ । ନ ଥିବ ଭକ୍ତିର ସାଧନ ॥
ଯାବହିଁ ନ ଥିବ ତାଙ୍କର । ଏମନ୍ତ ଲୋକଠାରେ ତାର ॥
ଦେଖିବ ପ୍ରେମର ଲକ୍ଷଣ । ସେ କୃଷ୍ଣ କୃପାରୁଟି ଜାଣ ॥
ଆପଣା ଚିତ୍ତରେ ବସ୍ତୁଇ । ତାହା ଜାଣିବ ହେତୁ କର ॥
ଏ ତନ ଭାବେ ଜାତ ପ୍ରେମ । ସୁଜନେ ସାବଧାନେ ଶୁଣ ॥
ସେ ପ୍ରେମଭକ୍ତଙ୍କ ଚରଣେ । ଶିର ମୋ ନମୁ ଅନୁକ୍ଷଣେ ॥
ଶ୍ରୀକୃଷ୍ଣ ଚରଣ ଯୁଗଳ । ଚିନ୍ତା କରଣ ନିରନ୍ତର ॥
କହନ୍ତି ଶିଶୁ ଭୀମ ଦାସ । ଗୀତ ବନ୍ଧରେ ଭକ୍ତି ରସ ॥

ଇତି ଶ୍ରୀହରିଭକ୍ତିଚନ୍ଦ୍ରୋଦୟେ ପ୍ରେମଭକ୍ତିବିଧି ଲକ୍ଷଣ ବର୍ଣ୍ଣନେ
ନାମ ବିଂଶୋଽଧ୍ୟାୟଃ ।

---

## ୨୧ଶ ଅଧ୍ୟାୟ ।

### ( ଭକ୍ତି ଅନୁକ୍ରମ )

ସୁଜନେ ସାବଧାନେ ଶୁଣ । ଭକ୍ତିରୁ ଜାତ ଅନୁକ୍ରମ ॥
ତହିଁରୁ ଯେଉଁ ଜାତ ହୋଇ । ତାହା ଶୁଣିମା ମନଦେଇ ॥
ପ୍ରଥମେ ଶ୍ରଦ୍ଧା ଭକ୍ତିରେ । ଯାହାର ହୁଅଇ ଚିତ୍ତରେ ॥
ଶ୍ରଦ୍ଧାରୁ ସାଧୁଙ୍କ ସଙ୍ଗତି । ଜାଣନ୍ତି ହୁଏ ଉତପତ୍ତି ॥
ସାଧୁଙ୍କ ସଙ୍ଗରୁ ସାଧନ । ଅଙ୍ଗ ହୁଅଇ ଉତପନ୍ନ ॥
ସାଧନୁ ଅନର୍ଥ ନିବୃତ୍ତି । ଜାଣିମ ହୁଏ ଉତପତ୍ତି ॥
ଏଥିରୁ ନିଷ୍ଠା ଭକତରେ । ଜାତ ସେ ହୁଅନ୍ତି ବେଗରେ ॥
ନିଷ୍ଠାରୁ ରୁଚି ହୁଏ ଜାତ । ରୁଚିରୁ ଆସକ୍ତି ସମ୍ଭୂତ ॥
ଆସକତରୁ ଜାତ ଭାବ । ଭାବରୁ ପ୍ରେମ ଯେ ସମ୍ଭବ ॥
ଏ ଭାବେ ଭକ୍ତିର ଏ କ୍ରମ । ଏ କ୍ରମେ ଜାତ ହୁଏ ପ୍ରେମ ॥
ଏ ଯେଉଁ ଶ୍ରୀକୃଷ୍ଣ ଭକ୍ତିରେ । ଶ୍ରଦ୍ଧା ମୂଳଟି ବେଦରେ ॥
ଶ୍ରଦ୍ଧାରୁ ଭକ୍ତି ହୁଏ ଜାତ । ଏହା ଯେ ଅଟଇ ସୁମତ ॥
ଯାର ବହୁତ ଶ୍ରଦ୍ଧା ଥାଇ । ଉତ୍ତମ ଭକ୍ତି ତାକୁ କହି ॥
ଶ୍ରଦ୍ଧା ନ ଥାଇ ଯାହାର । ଭକ୍ତି ନୁହଇ ଯେ ତାହାର ॥

ପ୍ରେମ ଭକ୍ତିରୁ ବଡ଼ ଆନ । ନାହିଁଟି ନିଶ୍ଚେ ଏହା ଜାଣ ॥
ଭକ୍ତି ସାଧନ ଯାହାଙ୍କର । ପ୍ରେମ ହୁଅଇ ତାହାଙ୍କର ॥
ଚିତ୍ତ ଶ୍ରୀକୃଷ୍ଣ ଚରଣରେ । ମଗ୍ନି ରହଇ ନିରନ୍ତରେ ॥
ଦରିଦ୍ର ନିଧି ପାଇ କରି । ଯେମନ୍ତ ଚିତ୍ତେ ଥାନ୍ତି ଧରି ॥
ସେ ଧନୁଁ ଚିତ୍ତ ଯେ ତାଙ୍କର । ଯେମନ୍ତ ନୁହଇ ବାହାର ॥
ସେହି ପ୍ରକାରେ ତାଙ୍କ ଚିତ୍ତ । କୃଷ୍ଣରେ ରମଇ ସତତ ॥
ଲେଉଟି ନ ଆସେ ଅବର । ଯେମନ୍ତ ଜାଣି ନଦୀନୀର ॥
ସମୁଦ୍ର ଭିତରେ ମିଶନ୍ତି । ରହି ବାହୁଡ଼ି ନ ଆସନ୍ତି ॥
ଏହି ପ୍ରକାରେ ସେହି ପୁଣ । ପ୍ରେମଭକ୍ତିର ଏ ଲକ୍ଷଣ ॥
ସେ ଭକ୍ତ ଜନ ଯେ ଅବର । ହୁଅନ୍ତି ବେନି ଯେ ପ୍ରକାର ॥
ସାଧନୁ ସିଦ୍ଧ ଯେଉଁମାନ । ସାଧନସିଦ୍ଧା ତାଙ୍କୁ ଜାଣ ॥
କୃପାରୁ ସିଦ୍ଧା ଜାଣ ଯେହି । ତା କୃପାସିଦ୍ଧା ବୋଲି କହି ॥
ଏ ଭାବେ ବେନି ଯେ ପ୍ରକାର । ଭକତମାନଙ୍କ ବଗ୍ଗର ॥
ସେ ସିଦ୍ଧାମାନଙ୍କ ମହିମା । କେ ଅବା ହୋଇବ ଉପମା ॥
ତାଙ୍କୁ ସାମାନ୍ୟ ଜାଣ ନାହିଁ । ଏ ତିନି ଭୁବନରେ କାହିଁ ॥
ଧନ୍ୟ କୁଳରେ ସେହୁ ଜାତ । ଧନ୍ୟ ତାଙ୍କର ତାତ ମାତ ॥
ସେ ଥାନ୍ତି ଯେକଣ ଦେଶରେ । ଧନ୍ୟ ସେ ଦେଶଟି ବେଭ୍ଭରେ ॥
ତାଙ୍କୁ ଯେ କରନ୍ତି ଦର୍ଶନ । ଧନ୍ୟ ଅଟନ୍ତି ସେହୁ ଜନ ॥
ଦର୍ଶନ ମାତ୍ରକେ ତାଙ୍କର । ହୁଅନ୍ତି ସର୍ବ ପାପ ଦୂର ॥
ତାଙ୍କର ସ୍ପର୍ଶୁ ଯୁଗତ । ଇଚ୍ଛିତେ ହୁଅନ୍ତି ମୁକତ ॥
ତାଙ୍କର କୃପା ହୁଏ ଯେବେ । ଭକ୍ତି ଲଭନ୍ତି ସୁଖେ ତେବେ ॥
ଏ ତେଣୁ ତାଙ୍କର ସମାନ । କେହି ନାହାନ୍ତି ନିଶ୍ଚେ ଜାଣ ॥
ତାହାଙ୍କୁ ଅନୁଗତ ହୋଇ । ମୋକ୍ଷ ନିରତେ ଥାନ୍ତି ରହି ॥
ମମାକ୍ଷ ମୋକ୍ଷ କାମନା କରି । ନିରତେ ଥାନ୍ତି ଅନୁସରି ॥
ମୋକ୍ଷ ଯେ ତାଙ୍କର ଅଗରେ । ଦଣ୍ଡନ୍ତି କୁଣର ପ୍ରକାରେ ॥
ମୋକ୍ଷକୁ କରନ୍ତି ସେ ମୋକ୍ଷ । ଏ ଯେଣୁ ମୋକ୍ଷ ତାଙ୍କୁ ତୁଚ୍ଛ ॥
ଅନ୍ତର କହିବା ଗୁପତ । ଯେ ସେ ଅଟନ୍ତି ପ୍ରେମ ଭକ୍ତ ॥
ସେ ଭକ୍ତମାନଙ୍କର ଜାଣ । ବଶ ଅଟନ୍ତି ଭଗବାନ ॥

ସେ ଯେଣେ ଯାନ୍ତି ତେଣେ ଯାନ୍ତି । ନିରତେ ତାଙ୍କ ସଙ୍ଗେ ଥାନ୍ତି ॥
ତାଙ୍କ ଭକ୍ତିରେ ହୋଇ ବଶ । କ୍ଷଣେହେଁ ନ ଛାଡନ୍ତି ପାଶ ॥
ହୋଇଣ ତାଙ୍କର ଆୟତ । ନିରତେ ଥାଆନ୍ତି ସଙ୍ଗାତ ॥
ଏଥିରେ ସଂଶୟ ଯେ ନାହିଁ । ଶ୍ରୀମୁଖେ ଛନ୍ତି ଏହା କହି ॥
ଶ୍ରୀ ଭାଗବତ ଏକାଦଶେ । ଗୁପତେ ଉଦ୍ଧବଙ୍କ ପାଶେ ॥
ଉଦ୍ଧବ ଶୁଣିମା ମୁଗତେ । ଯୋଗ ସାଖ୍ୟ ନ ପାଇ ମୋତେ ॥
ଶାସ୍ତ୍ର ସହିତେ ସ୍ୱାଦେ ଜାଣ । ଅଛନ୍ତି ଯେତେ ଧର୍ମମାନ ॥
ବେଦ ଅଧ୍ୟାପନ ଆବର । ଆବର ତପ ଯେ ସକଳ ॥
ଆବର ସକଳହିଁ ତ୍ୟାଗ । ଆଦରେ ଯେତେ ବିଧି ମାର୍ଗ ॥
ଏ କେହି ନ ସାଧନ୍ତି ମୋତେ । ମୋ ଭକ୍ତି ଯୋଗଟି ଯେମନ୍ତେ ॥
ମୋତେ କରନ୍ତି ଜାଣ ବଶ । କେହି ନ ପାଏ ତହିଁ ଲେଶ ॥
ଏଭାବେ ଶ୍ରୀମୁଖ ବଚନ । ଅଛଇଟିକ ପରମାଣ ॥
ଏହେନ ଭକ୍ତର ସେ ବଶ । ଅଟନ୍ତି ପ୍ରଭୁ ପୀତବାସ ॥
ଜାବନ୍ତି ଯାକେ ପାଶେ ଥାନ୍ତି । ଅନ୍ତରେ ନିତ୍ୟକୁ ନିଅନ୍ତି ॥
ଯେ ଭକ୍ତିଭାବ ଅନୁସାରେ । ନେଇଁ ରଖନ୍ତି ସନ୍ନିଧିରେ ॥
ଏହେନ ଭକ୍ତ ବଡ଼ ହୋଇ । ମହାମନ୍ତ୍ରେଲେ ଜାଣି ନାହିଁ ॥
ପ୍ରେମ ଯେ ଭକ୍ତି ସ୍ୱାଦେ ଜାଣ । ଏଠାରୁ ହୋଇଲା ସମ୍ପୂର୍ଣ୍ଣ ॥
ଶ୍ରୀକୃଷ୍ଣ ଚରଣେ ମାନସ । ଦେଇ କହିଲା ଭୀମ ଦାସ ॥

ଇତି ଶ୍ରୀହରିଭକ୍ତିଚନ୍ଦ୍ରୋଦୟେ ପ୍ରେମଭକ୍ତି ମହିମା ବର୍ଣ୍ଣନେ
ନାମ ଏକବିଂଶୋଽଧ୍ୟାୟଃ ।

---

## ୨୨ଶ ଅଧ୍ୟାୟ ।
### ( ନିତ୍ୟବୈକୁଣ୍ଠ )

ଏଥିଉତ୍ତାରୁ ସାବଧାନେ । ଶୁଣିମା ସାଧୁଜନମାନେ ॥
ଶ୍ରୀକୃଷ୍ଣ ଭକ୍ତିର ବିଧାନ । ତାହା ତ କଲି ସାବଧାନ ॥
ସେ ଭକ୍ତି ସାଧନ ବର୍ଣ୍ଣରେ । ପ୍ରଭୁଙ୍କ ଜାଣିବା ହେତୁରେ ॥
ନିତ୍ୟ ଗୋଲୋକେ ଭୁବଗ୍ରାସ । ଯେଉଁପ୍ରକାରେ ଛନ୍ତି ରହି ॥
ଯେମନ୍ତ ରୂପ ଯେ ଆସନ । ଯେଉଁପ୍ରକାରେ ଆବରଣ ॥
ଅନେକ ଗ୍ରନ୍ଥମାନଙ୍କରେ । କହି ଅଛନ୍ତି ଯେ ବେଦରେ ॥

ଭଜନ କରିବାର ପାଇଁ । ବହୁପ୍ରକାରେ ଛନ୍ଦ ବନ୍ଧ ॥
ଏଘେନ ନିତ୍ୟର ବିଗ୍ରହ । ନିତ୍ୟରୁ ବ୍ରହ୍ମାଣ୍ଡ ହେବାର ॥
ବ୍ରହ୍ମାଣ୍ଡେ ଲୀଳା ଯେତେ ସ୍ଥାନ । ଆବର ଅବତାରମାନ ॥
ଭଜନ ପାଇଁ ଏ ବିଗ୍ରହ । ଉଚିତ ଗ୍ରନ୍ଥେ କହିବାର ॥
ସୁଜନେ ସାବଧାନେ ଶୁଣ । ପ୍ରଥମେ ଗୋଲୋକ ବିଧାନ ॥
ପଞ୍ଚାଶ କୋଟି ଯେ ବିସ୍ତାର । ସହିତେ ବ୍ରହ୍ମାଣ୍ଡ ଭିତର ॥
ଏ ଅନୁରୂପେ ଜାଣି ଉଚ୍ଚ । ଅଣ୍ଡର ପ୍ରତ୍ୟେକ ଘୁସଞ୍ଚ ॥
ଆବର କୋଟିଏ ଯୋଜନ । ହାଣ୍ଡିର ବହଳ ପ୍ରମାଣ ॥
ଏ ଅଛି ଜଳର ଭିତରେ । ରହିଛି ବ୍ରହ୍ମାଙ୍କ ଅଙ୍କରେ ॥
ପୂରି ରହିଛି ମହାଜଳ । ତାପରେ ଅଛଇ ଅନଳ ॥
ଅନଳ ଉପରେ ପବନ । ପବନ ପରେ ମହାଶୂନ୍ୟ ॥
ଶୂନ୍ୟ ଉପରେ ଅହଙ୍କାର । ତାପରେ ମହତ ଆବର ॥
ମହତ ଉପରେ ପ୍ରକୃତି । ଯେ ଜାଣ ଆଦ୍ୟ ଯେ ଶକତି ॥
ଯେ କୋଟି ବ୍ରହ୍ମାଣ୍ଡ ଜନନୀ । ସକଳ ସୃଷ୍ଟିର କାରିଣୀ ॥
ଜଳ ଆଦିରେ ଏତେ ଜାଣ । ପ୍ରକୃତି ପାରେ ସାତଗୁଣ ॥
ଏଯାତ ଏକକୁ ଆରେକ । ଦଶ ଦଶ ଗୁଣ ଅଧିକ ॥
ଏଥିଉପରେ ବଇକୁଣ୍ଠ । ଯେ ପୁଣି ସବୁଙ୍କର ଶ୍ରେଷ୍ଠ ॥
ନିତ୍ୟଗୋଲୋକ ନାମ ଯାର । ସେ ମହା ଜ୍ୟୋତିର୍ମୟ ପୁର ॥
କୋଟିଏ ସୂର୍ଯ୍ୟର ସଦୃଶ । ଅଟଇ ଭୂମିର ପ୍ରକାଶ ॥
ଭୂମିର ଆୟୁତନ ଯେତ୍ର । ଫଣେଷି ନାହାନ୍ତ ତା କେହି ॥
କୋଟି କୋଟି ବ୍ରହ୍ମାଣ୍ଡମାନେ । ଯହିଁରେ ରେଣୁର ବିଧାନେ ॥
ଅତି ମହତ ତେଜସ୍ୱିଣି । କେ ତାହା କହିବ ବିଶେଷି ॥
ଘଷ ଦିବସ ତହିଁ ନାହିଁ । ସେହି ପ୍ରକାଶ ହୋଇଥାଇ ॥
ତହିଁରେ ସପ୍ତ ଆବରଣୀ । ଅଛଇ ଅମୂଲ୍ୟ ଘଟଣି ॥
ଗୃହଦଶରେ ଗୃହଦ୍ୱାର । ଏହି ବିଧିରେ ସାତପୁର ॥
ଯେତେକ ଦ୍ୱାର ତହିଁ ଜାଣ । ଅମୂଲ୍ୟ ରତ୍ନରେ ଘଟଣ ॥
କୁଳଶ ନିର୍ମାଣ କବାଟ । ଲାଗିଣି ଦଶାନ୍ତ ମୂରୁଟ ॥
ମଣି ପାବଚ୍ଛମାନଙ୍କରେ । ଯାନ୍ତି ଅସଂଖ୍ୟ ନିରନ୍ତରେ ॥

ସେଥି ଉପରେ ପୁରମାନ । ସମସ୍ତ ରତ୍ନରେ ନିର୍ମାଣ ॥
ଅଟ୍ଟାଳ ମଣ୍ଡପ ଜଗତି । ଏ ଆଦି ନାନା ଗୃହେ ଛନ୍ତି ॥
ସେମାନ ଆବରଣ ମାନ । ଲୀଳା ଯେ ବୋଲିଣ ପ୍ରଥମ ॥
ରସା ଯେ ଅବର ଭୁବନା । ଚତୁର୍ଥେ ବୋଲନ୍ତି ଯମୁନା ॥
ଧେନୁକା ସଖା ପୁଣି ଜାଣ । ସପତମରେ ଗୋପୀଗଣ ॥
ଏଥୁ ପ୍ରଥମ ଆବରଣେ । ଯେ ଛନ୍ତି ଶୁଣ ସାବଧାନେ ॥
ଚଣ୍ଡ ପ୍ରଚଣ୍ଡ ଦ୍ୱାରପାଳେ । ଅଛନ୍ତି ପୂର୍ବର ଦୁଆରେ ॥
ଭଦ୍ର ସୁଭଦ୍ର ଜାଣ ବେନି । ଦକ୍ଷିଣ ଦ୍ୱାରେ ଛନ୍ତି ପୁଣି ॥
ଜୟ ବିଜୟ ବେନି ଦ୍ୱାରୀ । ପଶ୍ଚିମ ଦ୍ୱାର ଅଧିକାରୀ ॥
ଧାତ ବିଧାତୃ ବେନି ବୀର । ଉତ୍ତର ଦ୍ୱାର ତାହାଙ୍କର ॥
ପୂର୍ବ ଦିଗରେ ଛନ୍ତି ଜାଣ । ଦ୍ୱାରକା ପୁର ଲୀଳାମାନ ॥
ଶ୍ରୀ ବାସୁଦେବ ସେହି ପୁରେ । ଅଷ୍ଟପାଟବଂଶୀଙ୍କ ତୁଲେ ॥
ଷୋଳ ସହସ୍ର ନାରୀକୁଳ । ଏ ଆଦି ଅଛନ୍ତି ସକଳ ॥
ଦକ୍ଷିଣେ ସଙ୍କର୍ଷଣ ଛନ୍ତି । ସଙ୍ଗତେ ଅଛନ୍ତି ରେବତୀ ॥
ପଶ୍ଚିମେ ଅଛନ୍ତି ପ୍ରଦ୍ୟୁମ୍ନ । ରତିଙ୍କୁ ଘେନି ସଙ୍ଗତେଣ ॥
ଉତ୍ତରେ ଅନିରୁଦ୍ଧ ପୁର । ଉଷା ଅଛନ୍ତି ସଙ୍ଗତର ॥
ଏହି ଆଦିରେ ହାଦେ ଜାଣ । ଆବର ଅବତାରମାନ ॥
ମୀନ ଯେ କୂର୍ମ ଏହି ବେନି । ବରାହ ନରସିଂହ ଘେନି ॥
ଆଉ ବାମନ ପର୍ଶୁରାମ । ଶ୍ରୀରଘୁନାଥ ବଳରାମ ॥
ବୁଦ୍ଧ ଯେ କଳଙ୍କୀ ଆଦିରେ । ଏ ଭାବେ ଦଶ ଅବତାରେ ॥
କପିଳ ନାରାୟଣ ନର । ଋଷଭ ନାରଦ ଶଙ୍କର ॥
ମୋହିନୀ ହଂସ ହୟଗ୍ରୀବ । ବିଶ୍ୱରୂପ ଯେ ଋଷ୍ଟୁଦେବ ॥
ଦତ୍ତ ହରିମ ଧନ୍ୱନ୍ତରି । ଯଜ୍ଞ କୁମାର ବୁଦ୍ଧହରି ॥
ଅଜିତ ଧାତା ଦିବାକର । ଧର୍ମ ଯେ ବିଧିଟି ଆବର ॥
ମୀନ ଆଦିରେ ହାଦେ ଜାଣ । ବିଶ ଅବତାର ପୁଣ ॥
ଯେ ଅବତାରେ ଯେଉଁ ଲୀଳା । ମଞ୍ଚରେ ଛନ୍ତି ପ୍ରଭୁ କଲା ॥
ଯେ ଯେ ସକଳ ଲୀଳାମାନେ । ଅଛନ୍ତି ସେହି ଆବରଣେ ॥
ଯେ ଘେନି ଲୀଳା ତାର ନାମ । ଯେ ଯେ ପ୍ରଥମ ଆବରଣ ॥

ସକଳ ଲୀଳା ଛନ୍ତି ରହି । ବୀଜ ସ୍ୱଭାବ ମତ ହୋଇ ॥
ଯେମନ୍ତ ବୀଜର ଭିତରେ । ଥାଆନ୍ତି ବୃକ୍ଷ ମୂଳେ ଡାଳେ ॥
ପୁଷ୍ପ ଫଳହିଁ ତହିଁ ଥାନ୍ତି । କାଳରେ ପ୍ରକାଶ ହୁଅନ୍ତି ॥
ସେହି ପ୍ରକାରେ ଲୀଳାମାନ । ନିତ୍ୟରେ ଅଛନ୍ତି ଜାଣ ॥
ଏଥିରେ ସଂଶୟ ନ କର । ଶୁଣିମା ଏଥିର ବିସ୍ତର ॥
ଏ ଗୂଢ଼ତମ ତତ୍ତ୍ୱ ବାଣୀ । ପୂର୍ବେ ନାରଦ ମହାମୁନି ॥
ଗୂଢ଼ତମଙ୍କର ଆଗରେ । କହିଲେ ଗୁପତ ଭାବରେ ॥
ଭଗବାନଙ୍କ ଲୀଳାମାନ । ଯେ ଯେଉଁ ଅବତାରେ ଜାଣ ॥
ଲୋକରେ ହୋଇଛି ବିଦିତ । ସେ ଲୀଳାମାନ ସବୁ ନିତ୍ୟ ॥
ସେ ସବୁ ଅଛନ୍ତି ନିତ୍ୟରେ । ଯେ ବିଷ୍ଣୁ ଧାମଟି ତହିଁରେ ॥
ମୁଁ ଏହା ବ୍ରହ୍ମାଙ୍କ ମୁଖରୁ । ଶୁଣିଛି ଅପାର କାଳରୁ ॥
ଏ ଯେନି ଏ କଥା ପ୍ରମାଣ । ଏଥି ଉତ୍ତାରୁ ଏବେ ଶୁଣ ॥
ଗୃହ ଦ୍ୱାରରେ ଗୃହ ନଦୀ । ବହୁ ଅଛନ୍ତି ଭୂମି ଭେଦି ॥
ସିଦ୍ଧିପ୍ରଦା ଯେ ପୂର୍ବେ ଜାଣ । ଆନନ୍ଦପ୍ରଦା ଯେ ଦକ୍ଷିଣ ॥
କାମପ୍ରଦା ଯେ ପଶ୍ଚିମରେ । ମଳୟ ନିର୍ଝର ଉତ୍ତରେ ॥
ଏହି ଭାବରେଟି ଯୁଗତେ । ଯେ ଛନ୍ତି କହିବଇଁ କେତେ ॥
ଏଥୁ ଦ୍ୱିତୀୟ ଆବରଣେ । ଛନ୍ତି ସକଳ ରସମାନେ ॥
ଆବର ଯେତେକଟି ଭାବ । ତୃତୀୟେ ଅଛନ୍ତି ଏ [illegible] ॥
ଚତୁର୍ଥେ ଅଛନ୍ତି ଯମୁନା । ଯେ ଭାବେ ହୁଏ ସେ ଘଟନା ॥
ସକଳ ଧେନୁ ପଞ୍ଚମରେ । ଗୋମାତା ନନ୍ଦନୀ ଆଦିରେ ॥
ଷଷ୍ଠ ଆବରଣରେ ଜାଣ । ସୁଦାମା ଆଦି ସଖାଗଣ ॥
ଦାରୁକ ଗରୁଡ଼ ଅକ୍ରୂର । ଅନନ୍ତ କୃପ ବ୍ରହ୍ମା ଆର ॥
ଉଦ୍ଧବ ବିଶ୍ୱ ଯେ କେସନ । ଗଜ ଲଚନ ଉଗ୍ରସେନ ॥
ସାତ୍ତ୍ୱିକ ଆଦି ଛନ୍ତି ରହି । ଏ ବିଶ ପାରଷଦେ ତହିଁ ॥
ଶୁକ ସନକ ସନାତନ । ଆଦିରେ ଛନ୍ତି ଋଷିଗଣ ॥
ପୃଥୁ ପରୀକ୍ଷ ହନୁମନ୍ତ । ଭୀଷ୍ମ ପ୍ରହ୍ଲାଦ ସହିତ ॥
ଅନେକ ଭୃତ୍ୟମାନେ ଛନ୍ତି । କେତେ କହିବ ତାହା ଚିନ୍ତି ॥
ତହିଁରେ ସନ୍ତାନ ସମାନ । ଅଛନ୍ତି ନାନା ତରୁଗଣ ॥

ଅମୃତ ରସରୁ ଅଧିକ । ଅଛଇ ତହିଁରେ ଉଦକ ॥
ଏ ଭାବେ ଷଡ଼ ଆବରଣ । ସପତମରେ ଯାହା ଶୁଣ ॥
ତ୍ରିପୁରୀ ପୂର୍ବର ଦୁଆରେ । ରଙ୍ଗଦେବୀ ଯେ ଦକ୍ଷିଣରେ ॥
ଚମ୍ପକଲା ପଶ୍ଚିମେ ଜାଣ । ଭଦ୍ରକାଳୀ ଯେ ଉତ୍ତରେଣ ॥
ଏ ଭାବେ ଏ ଗୃର ଦୁଆରେ । ଏ ଗୃର ଦେବୀଷ୍ଟି ବେଷ୍ଟରେ ॥
ମଧ୍ୟରେ ଅଛି ବୃନ୍ଦାବନ । ଦ୍ୱାଦଶ ବନ ସହିତେଣ ॥
ଭଦ୍ର ଶ୍ରୀ ଲୋହ ଯେ ଭାଣ୍ଡୀର । ବହୁଳା କୁମୁଦ ଖଦିର ॥
ମଧୁବନ ଯେ ମହାବନ । ତାଳ ଯେ କାମ୍ୟ ବୃନ୍ଦାବନ ॥
ଦ୍ୱାଦଶ ବନ ଏ ଯେ ପୁଣି । ଅଛନ୍ତି ଷଡ଼ ଋତୁ ଘେନି ॥
ତହିଁ ମଧ୍ୟରେ ଦିବ୍ୟପୁର । ମହିମା କେ କହୁ ତହିଁର ॥
ଅମୂଲ୍ୟ ରତ୍ନମାନ ଘେନି । ପୁର ନିର୍ମାଣି ଛନ୍ତି ପୁଣି ॥
ମଧ୍ୟରେ କଳପ ପାଦପ । ଶୁଦ୍ଧ ପ୍ରବାଳ ତାର ରୂପ ॥
ତହିଁ କୁସୁମ ପତ୍ରମାନ । ସବୁହିଁ ଶୁଦ୍ଧ ଯେ ସୁବର୍ଣ୍ଣ ॥
ଅଷ୍ଟରତ୍ନରେ ତହିଁ ଫଳ । ଝଡ଼ି ପଡ଼ନ୍ତି ନିରନ୍ତର ॥
ପୁଷ୍ପରେ ମକରନ୍ଦ ଜାଣ । ସ୍ୱାଦେ ଅଛଇ ସୁଧା ଜାଣ ॥
ମୁନିକନ୍ୟାମାନେ ଯେ ତହିଁ । ଭ୍ରମରୀ ରହିଛନ୍ତି ହୋଇ ॥
କୂଜନ କରି ବେଦମାନ । ଗୁମୁରେ କରନ୍ତି ଗାୟନ ॥
ସେ ବୃକ୍ଷମୂଳେ ଜ୍ୟୋତିରୂପ । ମଣିରେ ଘଟିତ ମଣ୍ଡପ ॥
ଯୋଜନେ ଅଛଇ ବିସ୍ତାର । ଉଚ୍ଚ ଏ ଅନୁରୂପେ ତାର ॥
ଉପରେ ଚନ୍ଦ୍ରାତପମାନ । ଦେବାଙ୍ଗ ପାଟରେ ମଣ୍ଡନ ॥
ମୁକୁତା ଝମ୍ପା ଯେ ଗୁମର । ଲମ୍ବିଣ ଦିଶନ୍ତି ସୁନ୍ଦର ॥
ତହିଁରେ ଘଟିତ କମଳ । ବିସ୍ତାର ସହସ୍ରେକଦଳ ॥
ତାହାର ମଧ୍ୟରେ ଘଟିତ । ଅଷ୍ଟ ଏ ଦଳ ଯେ ଯୁଗତ ॥
ମଧ୍ୟରେ କେଶର ଘଟନ । ତଥି ମଧ୍ୟରେ ଷଟକୋଣ ॥
ତ୍ରିକୋଣ ତହିଁର ମଧ୍ୟରେ । ଯେ ଛନ୍ତି ଦୁର୍ଲଭ ବେଶରେ ॥
ତହିଁ ମଧ୍ୟରେ ପୁଣ ଜାଣ । ଅଛଇ ଦିବ୍ୟ ଯେ ଆସନ ॥
ତହିଁ ଉପରେ ବନମାଳୀ । ସୁଖେ ଅଛନ୍ତି ବଙ୍କେକର ॥
ଶିରେ ବରହିପୁଚ୍ଛଚୂଳ । କର୍ଣ୍ଣରେ ମକର କୁଣ୍ଡଳ ॥

ଲଲାଟେ କସ୍ତୁରୀର ଟୀକା । ସର୍ବାଙ୍ଗେ ଚନ୍ଦନ ଭୂଷିତା ॥
ହୃଦରେ କଉସ୍ତୁଭ ଜାଣ । ଆବର ଶ୍ରୀବତ୍ସ ଲକ୍ଷଣ ॥
କଟିରେ ପୀତ ଛପ ଦୁକୂଳ । ମେଖଳା କ୍ଷୁଦ୍ର ଘଣ୍ଟିକୁଳ ॥
କରରେ କଙ୍କଣ ବାହୁଟି । ବିବିଧ ମୁଦ୍ରିକା ଅଙ୍ଗୁଷ୍ଠି ॥
ମୁକ୍ତାର ନୂପୁର ପାଦେଣ । ଶ୍ୟାମ ଦାସର ନିତ୍ୟ ଧ୍ୟାନ ॥
ସନ୍ନିଧେ ଅଛନ୍ତି ରାଧିକା । ଯେ ରୂପେ ସବୁହୁଁ ଅଧିକା ॥
ତପତ କାଞ୍ଚନ ଗଉରୀ । ବ୍ରହ୍ମାଣ୍ଡ ମୋହନୀ ସୁନ୍ଦରୀ ॥
ଯେ ଜାଣ ଇଙ୍ଗିତ ବକାରେ । ଶ୍ରୀ ଭଗବାନ ମନ ହରେ ॥
ବିବିଧ ଆଭରଣ ହୋଇ । ପ୍ରଭୁ ସନ୍ନିଧେ ଛନ୍ତି ରହି ॥
ମନ ଲୋଚନ କୃଷ୍ଣଠାରେ । ନିବେଶିଛନ୍ତି ପ୍ରେମଭରେ ॥
କୃଷ୍ଣରେ ଅନୁରାଗ ଚିତ୍ତ । କେଳିକୁ କେଳି ଯେ ଉଦ୍ଧତ ॥
ପ୍ରଭୁଙ୍କ ଚିତ୍ତେ ଅନୁରାଗ । ସହଜେ ଅତ୍ୟନ୍ତ ସଂଯୋଗ ॥
ସେ ସୁଖ କେ ପାରିବ କହି । ଯହିଁ ବଚନ ଜାଣ ନାହିଁ ॥
ଏଥି ଉତ୍ତାରୁ ଏବେ ଶୁଣ । ଷଟ୍‌କୋଣର ଯେ ବିଧାନ ॥
ପୂର୍ବ ସ୍ତୁମୁରେ ବୃନ୍ଦାବତୀ । ସେ ଦିବ୍ୟ ଚ୍ଛମର ଟଳାନ୍ତି ॥
ତାହାଙ୍କ ବାମେ ରଙ୍ଗଦେବୀ । ବିଞ୍ଚଣୀ ଘେନି ଛନ୍ତି ସେବି ॥
ସୁଭଦ୍ରା ତାହାଙ୍କ ବାମରେ । ଖଡ୍ଗ ଧରଣ ଉଭା ଧୀରେ ॥
ତାହାଙ୍କ ବାମେ ପ୍ରିୟମ୍ବଦା । ଛତ୍ର ଧରଣ ସେ ପ୍ରମଦା ॥
ତାହାଙ୍କ ବାମେ ରତ୍ନରେଖା । ଦର୍ପଣ ଧରି ସେ ନାୟିକା ॥
ନିତ୍ୟା ଈଶାଣ କୋଣେ ଥାଇ । କର୍ପୂର ତାମ୍ବୂଳ ଯୋଗାଇ ॥
ଏ ଭାବେ ଜାଣ ଷଟ୍‌କୋଣ । ଯେ ଛନ୍ତି ଅଷ୍ଟଦଳେ ଜାଣ ॥
ପୂର୍ବେ ଲଳିତା ସମ୍ମୁଖରେ । ସୁଗନ୍ଧ ପୁଷ୍ପମାଳା କରେ ॥
ଅନଳ କୋଣରେ ଶ୍ୟାମଳା । ଶ୍ରୀକରେ ଚନ୍ଦନ କପୁରା ॥
ଦକ୍ଷିଣେ ସବ୍ୟା ଯେ କାମିନୀ । ଶ୍ରୀକରେ ମଧୁପାନ ଘେନି ॥
ନୈର୍ଋତ କୋଣରେ ଶ୍ରୀମତୀ । ରତ୍ନର ଝରି ଘେନିଛନ୍ତି ॥
ବରୁଣ ଦିଗେ ହରିପ୍ରିୟା । ମଣି ପାଦୁକା ଘେନି ଠିଆ ॥
ବାୟୁ କୋଣେ ବିଶାଖା ଛନ୍ତି । ତାଳ ଧରଣ ଗୀତ ଗାନ୍ତି ॥
ଉତ୍ତରେ ଚନ୍ଦ୍ରମୁଖୀ ଜାଣ । କରନ୍ତି ବୀଣା ଯେ ବାଦନ ॥

ଐଶାନ୍ୟେ ପଦ୍ମାବତୀ ସେବେ । କରଯୋଡ଼ଣ ନମ୍ର ଭାବେ ॥
ଆଜ୍ଞାକୁ ଅବଧାରି ଛନ୍ତି । ଯେ ପ୍ରତିଜ୍ଞା ପଣ ଜାଣନ୍ତି ॥
ଚତୁର୍ଥେ ଗୋକୁଳବାସିନୀ । ପାଞ୍ଚ ସାଧନ ସିଦ୍ଧା ଧନି ॥
ଏ ପଞ୍ଚବିଧା ଗୋପୀଗଣେ । ସେବନ୍ତି ଶ୍ରୀକୃଷ୍ଣ ଚରଣେ ॥
କେ ବୀଣା ରବା କେ ମର୍ଦ୍ଦଳ । କେ ବେଣୁ ବଂଶୀ କେ କାହାଳ
କେ ଗୀତ ସୁସ୍ୱରେ ଗାବନ୍ତି । କେ ତହିଁ ନୃତ୍ୟ ଯେ କରନ୍ତି ॥
ଏମନ୍ତେ ତହିଁ ଯେତେ ନାରୀ । କୃଷ୍ଣ ମାନସ ସୁଖକାରୀ ॥
ସବୁର ସପ୍ରେମ ଯେ ମନ । କାହାର ନାହିଁନା ନିଜନ ॥
ଏ ଭାବେ କୃଷ୍ଣ ନିତ୍ୟପୁର । କହିବା ଯୋଗ୍ୟ ତା କାହାର ॥
ଯେ ଛନ୍ତି ସମସ୍ତେ ଯୁବତୀ । ନାହିଁ ପୁରୁଷ ଗତାଗତି ॥
ବେଢ଼ରେ କୃଷ୍ଣ ଅନ୍ତଃପୁର । ଯେ ନିତ୍ୟଗୋଲୋକ ବଗୃର ॥
ବାହାର ହେଲେ ଅବକାଶ । ଭୃତ୍ୟେ ଖଟନ୍ତି ଯାଇ ପାଶ ॥
ଯେ ଯାହା ସେବାକୁ ଅବୋର । ପ୍ରଭୁଙ୍କୁ କରନ୍ତି ବଗୃର ॥
ଯେ ନିଜ ଭକ୍ତି ଅନୁସାରେ । ଖଟନ୍ତି କୃଷ୍ଣ ଚରଣରେ ॥
ଏ ଭାବେ ନିତ୍ୟର ବଗୃର । ସୁଜନ ଜନେ ଚିନ୍ତାକର ॥
ତହିଁ ଅଛନ୍ତି ଯେତେ ଜଣ । ସମସ୍ତେ କୃଷ୍ଣ ଭକ୍ତ ଜନ ॥
ଭକ୍ତର ବାହାରେ ଆବର । ଦେଖିବା ଯୋଗ୍ୟ ତା କାହାର ॥
ଶ୍ରୀକୃଷ୍ଣ ଚରଣେ ମାନସ । ଦେଇ କହିଲା ଭୀମ ଦାସ ॥

ଇତି ଶ୍ରୀହରିଭକ୍ତିଚନ୍ଦ୍ରୋଦୟେ ଭଜନେ ନିତ୍ୟବୈକୁଣ୍ଠ
ବଗୃରେ ନାମ ଦ୍ୱାବିଂଶୋଽଧ୍ୟାୟଃ ।

---

## ୨୩ଶ ଅଧ୍ୟାୟ ।

( ସୃଷ୍ଟି ସର୍ଜନା )

ଶୁଣ ସୁଜନେ ସାବଧାନେ । ନିର୍ମଳ କର ଏକ ମନେ ॥
ଯେମନ୍ତ କର ନରହର । ସୃଷ୍ଟି ସର୍ଜନା ଛନ୍ତି କର ॥
ସାମାନ୍ୟେ ତହିଁର ବଗୃର । କହଇ ସାବଧାନ କର ॥
ନିତ୍ୟ ଗୋଲୋକେ ଭଗବାନ । କରନ୍ତି ନାନା ଲୀଳାମାନ ॥
ସେ ଲୀଳା ପ୍ରକାଶ ନିମନ୍ତେ । ବଗୃର କରନ୍ତେଣ ଚିତ୍ତେ ॥
ପ୍ରବେଶି ହୃଅନ୍ତେ ଯୁଗତ । ପ୍ରକୃତ ହୋଇଲେକ ଜାତ ॥

ଶ୍ରୀକୃଷ୍ଣ ଅଙ୍ଗୁ ଜାତ ହୋଇ । ଶକ୍ତି ସ୍ୱଭାବେ ଦେବୀ ରହି ॥
ସେ ସର୍ବଭୂତଙ୍କ ଜନନୀ । ସକଳ ତତ୍ତ୍ୱଙ୍କ କାରଣୀ ॥
ତ୍ରୈଲୋକ୍ୟ ମୋହନୀ ଅଭୟା । ଯାହାକୁ ବୋଲ ବିଷ୍ଣୁମାୟା ॥
ବେଦର ବୀଜ ଜାଣ ସେହି । ତ୍ରି ଗୁଣ ସେହିଠାରୁ ହୋଇ ॥
ସକଳ ଜାତ ସେ କରନ୍ତି । କାଳେ ସକଳ ସଂହରନ୍ତି ॥
ମୂଳ ପ୍ରକୃତି ସେ ଯେ ଜାଣ । କାରଣମାନଙ୍କ କାରଣ ॥
ସେ ଦେବୀ ହୋଇ ଅବତାର । ବେଗେ ଯୋଡ଼ିଲେ ଦୁଇ କର
ତାହାଙ୍କୁ ପ୍ରଭୁ ଆଜ୍ଞା ଦେଲେ । ଜଗତ ଉଆଅ ବୋଇଲେ ॥
ସେ କୃଷ୍ଣ ଆଜ୍ଞାରେ ତ୍ୱରିତ । ମହତକୁ କଲେକ ଜାତ ॥
ମହତ ତହୁଁ ଅହଙ୍କାର । ତକ୍ଷଣେ ହୋଇଲା ବାହାର ॥
ସେ ଅହଙ୍କାରରୁ ତ୍ୱରିତ । ପଞ୍ଚ ତନମାତ୍ରା ଯେ ଜାତ ॥
ରୂପ ଯେ ଶବଦ ସ୍ପରଶ । ଗନ୍ଧ ଆବର ଜାଣ ରସ ॥
ତାହାଙ୍କ ତହିଁରୁ ଯୁଗତ । ଆକାଶ ହୋଇଲାକ ଜାତ ॥
ଆକାଶୁଁ ହୋଇଲେ ପବନ । ପବନୁ ହୋଇଲେ ଦହନ ॥
ଦହନୁ ଜଳ ଜାତ ପୁଣି । ଜଳରୁ ହୋଇଲେ ଅବନୀ ॥
ସେ ଯେ ଅବନୀ ଯୁଗତରେ । ରହିଲେ ମହାଜଳ ତଳେ ॥
ସେ ପଞ୍ଚ ମାତ୍ରା ଯେ ଯୁଗତେ । ରହିଲେ ପଞ୍ଚ ମହାଭୂତେ ॥
ଶବଦ ରହିଲେ ଗଗନେ । ସ୍ପରଶ ରହିଲେ ପବନେ ॥
ରୂପ ରହିଲେ ହୁତାଶରେ । ରସ ରହିଲେ ଯାଇଁ ନୀରେ ॥
ଗନ୍ଧ ରହିଲେ ଯାଇ ମହୀ । ପଞ୍ଚଭୂତରେ ପଞ୍ଚ ରହି ॥
ଏ ତହିଁ ଇନ୍ଦ୍ରିୟଗଣର । ବିରାଟ ଜାତ ଯେ ଆବର ॥
ସୁଜନେ ଶୁଣ ମନ ଦେଇ । ଯେମନ୍ତ ଭାବେ ଛନ୍ତି ରହି ॥
ମହତ ଅହଙ୍କାର ବେନି । ପଞ୍ଚ ମହାଭୂତଙ୍କୁ ଘେନି ॥
ଏଗାର ଇନ୍ଦ୍ରିୟ ଯେ ଗଣ । ଘଟନା କଲେ ତତକ୍ଷଣ ॥
ଶ୍ରବଣ ରୂପ ଚକ୍ଷୁ ତ୍ୱକ । ରସନା ନାସିକାକୁ ଦେଖ ॥
ବଚନ ପାଦ ବେନି ହସ୍ତ । ଆବର ପାୟୁ ଯେ ଉପସ୍ଥ ॥
ମନକୁ ଘେନିଣ ଏଗାର । ଇନ୍ଦ୍ରିୟମାନଙ୍କ ବିସ୍ତର ॥
ଏବେ ଇନ୍ଦ୍ରିୟମାନଙ୍କେଣ । ପଞ୍ଚଭୂତ ଯେ ସହିତେଣ ॥

ପଞ୍ଚ ତନମାତ୍ରାକୁ ଘେନ । ମହତ ଅହଙ୍କାର ବେନ ॥
ପ୍ରକୃତି ଗୁଣର ସହିତେ । ଶ୍ରୀକୃଷ୍ଣ କଳାର ଯୁଗତେ ॥
ବିଗ୍ରହ କରି ସ୍ଥୂଳ ଅଙ୍ଗ । ଜାତ କଲେକ ସେ ଯେ ବେଗ ॥
ସେ ଯେ ବିରାଟ ଦେବରାଜ । କୋଟି ସୂର୍ଯ୍ୟର ଯାର ତେଜ ॥
ତାହାଙ୍କୁ ମହାବିଷ୍ଣୁ କହି । ତାଙ୍କୁ ସମାନ ଅବା କାହିଁ ॥
ଯା ରୋମ ବିବର ପଥନେ । କୋଟି କୋଟି ବ୍ରହ୍ମାଣ୍ଡମାନେ ॥
ବାହାର ହୁଅନ୍ତି ପଶନ୍ତି । ରେଣୁର ପ୍ରାୟେକ ଦିଶନ୍ତି ॥
ଏହି ବିଗ୍ରହରେ କଳେବର । ଅଟଇ ଜାଣ ତାହାଙ୍କର ॥
ଯାହାର ଏକଇ ନିଶ୍ୱାସ । ବ୍ରହ୍ମାଙ୍କୁ ଅଟଇ ଆୟୁଷ ॥
ବ୍ରହ୍ମାଣ୍ଡ ଗଢ଼ନ୍ତି ପାଳନ୍ତି । ସେହି ନିଶ୍ୱାସକରେ ଯାନ୍ତି ॥
ଆଉ ନିଶ୍ୱାସ କରେ ଯେବେ । ଆରେକ ବ୍ରହ୍ମା ହୁଏ ତେବେ ॥
ଏ ଭାବେ ମହିମା ଯାହାର । ତାହାଙ୍କୁ କରେ କେ ଗୋଚର ॥
ପୀତବସନ ଚତୁର ଭୁଜ । ମହାମହିମ ଦେବରାଜ ॥
ଚକ୍ର ଅମ୍ବୁଜ ଗଦା ଶଙ୍ଖ । କୌସ୍ତୁଭମଣି ଶ୍ରୀବତ୍ସାଙ୍କ ॥
ସେ ମହାଜଳର ଉପରେ । ରହିଲେ ଅନନ୍ତ ଶଯ୍ୟାରେ ॥
ଆୟୁଧମାନ ପାଶେ ଥୋଇ । ଶ୍ରୀକର ସୀମସ୍ଥାନେ ଦେଇ ॥
ଯୋଗ ଯେ ନିଦ୍ରାରେ ମୁରାରି । ଅଛନ୍ତି ଲୀଳା ବିନୋଦ କରି ॥
ଶ୍ରୀକରେ ସିନ୍ଧୁର ନନ୍ଦନୀ । ଚରଣ ମର୍ଦ୍ଦିଳନ୍ତି ପୁଣି ॥
ସୀମସ୍ଥାନରେ ସରସ୍ୱତୀ । ପଞ୍ଚମସ୍ୱରେ ବୀଣା ବାନ୍ତି ॥
ତାଙ୍କର ନିଶ୍ୱାସରୁ ଜାତ । ଚାରି ଯେ ବେଦଟି ଯୁଗତ ॥
ତାଙ୍କର ନାଭିରୁ ବାହାର । ହୋଇଲା ଏକଇ କମଳ ॥
ସେ ପଦ୍ମ ମଧ୍ୟରୁ ଯୁଗତ । ହୋଇଲେ ପିତାମହ ଜାତ ॥
ରଜୋଗୁଣରୁ ଅବତରି । ଅଷ୍ଟ ଲୋଚନ ମୁଣ୍ଡ ଚାରି ॥
ବିଷ୍ଣୁ ନିଶ୍ୱାସୁଁ ବେଦମାନ । ତତକ୍ଷଣେ କଲେକ ଶ୍ରବଣ ॥
ତା ନିଜ ହୃଦରେ ବିଚାରି । ସେହି ବିଗ୍ରହରେ ସୃଷ୍ଟି କରି ॥
ସେ ପଞ୍ଚଭୂତଙ୍କୁ ଘେନିଣ । ବ୍ରହ୍ମାଣ୍ଡ କଲେକ ଘଟଣ ॥
ପଞ୍ଚାଶ କୋଟି ଯେ ବିସ୍ତାର । ଏ ଅନ୍ତରୁକ୍ଷେ ଉଚ୍ଚ ତାର ॥
ଆବର କୋଟିଏ ଯୋଜନ । ହାଣ୍ଡି ବହଳ ପରମାଣ ॥

ସେ ମହାଜଳର ଉପରେ । ରହିଲା ତାଙ୍କର ଆଜ୍ଞାରେ ॥
ତହିଁ ଭିତରେ ପଶି ଧାତା । ସୃଷ୍ଟି ସର୍ଜନା କଲେ ଚନ୍ତା ॥
ମଧ୍ୟେ ଅବନୀ ପୁଣି କଲେ । ନେଣୁଛି ତିନିପୁର ହେଲେ ॥
ତଳେ ଯେ ହୋଇଲା ପାତାଳ । ଉପରେ କଲେ ସୁରଆଳ ॥
ମଧ୍ୟରେ ମର୍ତ୍ତ୍ୟ କରି ପାଞ୍ଚ । ବେଦର ବଚନରେ ବିରଞ୍ଚି ॥
ପୁଣି ତା ଚତୁରଆନନ । ଚଉଦଲୋକ କଲେ ଜାଣ ॥
ଅତଳ ବିତଳ ସୁତଳ । ତଳାତଳ ଯେ ରସାତଳ ॥
ମହାତଳ ପାତାଳ ପୁଣ । ତଳେ ଏ ସାତଲୋକ ଜାଣ ॥
ଭୂଲୋକ ଭୁବ ଲୋକ ବେନି । ସ୍ୱର ଲୋକକୁ ଘେନି ତିନି ॥
ମହଲ୍ଲୋକ ଯେ ଜନ ଲୋକ । ତପ ଲୋକଟି ସତ୍ୟଲୋକ ॥
ସପତଲୋକ ଏ ପ୍ରକାରେ । କରଣ ବେଦର ବଚନରେ ॥
ସୁମେରୁ ଗିରି ପୁଣ କଲେ । ଅବନୀ ମଧ୍ୟରେ ପୋତିଲେ ॥
ଶୁଦ୍ଧ ସୁବର୍ଣ୍ଣ ହୋଇ ଜାଣ । ସହସ୍ର ଶୃଙ୍ଗ ପରିମାଣ ॥
ଦେବତାମାନଙ୍କ ତହିଁରେ । ପୁର ରଚିଲେ ଯେ ଯାହାରେ ॥
ରୁଦ୍ରଲୋକଙ୍କୁ କଇଳାସ । ଏ ଆଦି ନରରୂପେ ବାସ ॥
ସ୍ୱର୍ଗ ଯେ ବଇକୁଣ୍ଠ ପୁଣ । ମର୍ତ୍ତ୍ୟଲୋକରେ ହୋଇ ଜାଣ ॥
ଶ୍ରୀ ନୀଳକନ୍ଦର ମଞ୍ଚରେ । ପାତାଳ ବୈକୁଣ୍ଠ ତଳରେ ॥
ଏ ତିନି ବଇକୁଣ୍ଠ ଜାଣ । ତିନିପୁରରେ ଏ ଯେ ପୁଣ ॥
ଧନ ପ୍ରଳୟ ଏଥି ନାହିଁ । ସର୍ବଦାକାଳେ ଥାଏ ରହି ॥
ଗୋଲୋକୁ ହୋଇଛି ପ୍ରକାଶ । ଏଥିର ମହିମା ଅଶେଷ ॥
ସେ ଯେ ଆକାଶ ବଇକୁଣ୍ଠ । ବିଜୟେ ଦେବଙ୍କର ଶ୍ରେଷ୍ଠ ॥
ଚତୁର୍ଭୁଜ ଯେ ପୀତାମ୍ବର । ଶଙ୍ଖ କମଳ ଚକ୍ରକର ॥
ସଙ୍ଗତେ ଲକ୍ଷ୍ମୀ ସରସ୍ୱତୀ । ଘେନି ବିଜୟେ ଶିରୀପତି ॥
ମର୍ତ୍ତ୍ୟ ଯେ ବଇକୁଣ୍ଠେ ପୁଣ । ନୀଳକନ୍ଦର ଯେଉଁଟି ଜାଣ ॥
ତହିଁରେ ଦାରୁବ୍ରହ୍ମରୂପ । ବ୍ରହ୍ମଆନନ୍ଦ ସୁଧାକୂପ ॥
ଲୋଚନେ ବାରେକ ଦେଖିଲେ । ଭବ ବନ୍ଧନୁ ଯାନ୍ତି ଭଲେ ॥
ତହିଁରେ ଛନ୍ତି ଯେତେ ଜାଣ । ସମସ୍ତେ ଚତୁର୍ଭୁଜ ପୁଣ ॥
ଦେବତା ତନୁ ଜାଣ ସେହି । ସ୍କନ୍ଦ ପୁରାଣେ ଛନ୍ତି କହି ॥

ପାତାଳ ବଇକୁଣ୍ଠ ଜାଣ । ଏହିପ୍ରକାରେ ହାଦେ ପୁଣ ॥
ଏଥନ ବଇକୁଣ୍ଠ ହରି । ଅଛନ୍ତି ନିତ୍ୟ ଭାବେ କରି ॥
ମଥୁରାଅଦ ହାଦେ ଜାଣ । ଅଯୋଧ୍ୟା ଦ୍ୱାରକା ଭୁବନ ॥
ଏଥିକ କ୍ଷେତ୍ର ଛନ୍ତି ଯେତେ । ସେ ଲୀଳାସ୍ଥାନଟି ଯୁଗତେ ॥
ଲୀଳାରେ ବିଜେ କରଥାନ୍ତି । ଲୀଳା ସରଲେ ତହୁଁ ଯାନ୍ତି ॥
ଏମନ ଏତକ ଅଧିକ । ଥାଅନ୍ତି ସ୍ଥାନ ଥିବା ଯାକ ॥
ଏଥିଉତ୍ତାରୁ ଜଗନ୍ନାଥ । ପ୍ରଜାପତିଙ୍କି କଲେ ଜାତ ॥
ତାହାଙ୍କୁ ବେଦ ଶିକ୍ଷା ଦେଇ । ସର୍ଜନାକର ବୋଲି କହି ॥
ସେ ଧାତା ଅଙ୍ଗରେ ତ୍ୱରିତ । ଦେବତାମାନ କଲେ ଜାତ ॥
ଗନ୍ଧର୍ବ ଅଦ ବିଦ୍ୟାଧର । ଯକ୍ଷ ଯେ ପିଶାଚ କିନ୍ନର ॥
ନର ଅସୁର ନାଗମାନ । ସକଳ କଲେକ ଭିଆଣ ॥
ସ୍ଥାବର ଜଙ୍ଗମ ଯେ ବେନି । କୀଟ ପତଙ୍ଗ ଗୃହଖାନି ॥
ଏଭାବେ ଚଉରାସି ଲକ୍ଷ । ଯେ ଜୀବ କଲେ ତା ପ୍ରତ୍ୟକ୍ଷ ॥
ଯେ ଯହିଁ ତହିଁ ତା ରଖିଲେ । ଏଭାବେ ସୃଷ୍ଟି ଭିଆଇଲେ ॥
ଏମନ୍ତ ପ୍ରକାରେଣ ଜାଣ । ଏହାହେ ସୃଷ୍ଟିର ପ୍ରମାଣ ॥
ଆପଣା ମନରେ ବିଚାର । ଜୀବ ଯେମନ୍ତ ପରକାର ॥
ଶ୍ରୀ ଭଗବାନଙ୍କି ଯେମନ୍ତ । ବିଚାର କର ନିଜ ଚିତ୍ତ ॥
ତାହାଙ୍କୁ ପାଇବା ବିଚାର । ଯଦଟି ଅଛଇ ତୁମ୍ଭର ॥
ଭକ୍ତିରେ ଦିଅ ବେଗେ ମନ । ନିରତେ କରଣ ସାଧନ ॥
କହିଲା ଶିଶୁ ଭୀମ ଦାସ । ଭକ୍ତି ବିଚାରେ ଏହୁ ରସ ॥

ଇତି ଶ୍ରୀ ହରିଭକ୍ତିଚନ୍ଦ୍ରୋଦୟେ ଭଜନେ ସର୍ଜନା
ବିଚାରେ ନାମ ତ୍ରୟସ୍ତ୍ରିଂଶୋଽଧ୍ୟାୟଃ ।

---

## ୩୪ଶ ଅଧ୍ୟାୟ ।
### ( ନିତ୍ୟଲୀଳା ବିଚାର )

ଶୁଣ ସୁଜନେ ସାଧୁକଥା । ଶ୍ରୀକୃଷ୍ଣ ଲୀଳାର ବ୍ୟବସ୍ଥା ॥
ଭଗବାନଙ୍କ ଲୀଳା ଯେହୁ । ସାମାନ୍ୟ ନୁହେ ଜାଣ ସେହୁ ॥
ଯେମନ୍ତ ହୋଇ ଭଗବାନ । ନିତ୍ୟ ସ୍ୱରୂପ ସହିତେଣ ॥
ନିତ୍ୟର ଶୁଦ୍ଧ ଯେ ସହିତେ । ଯେ ନିତ୍ୟବାସିଙ୍କ ସଙ୍ଗତେ ॥

ନିତ୍ୟର ଲୀଳା ଜାଣ ଯେହ । ପ୍ରକାଶ କରିବାର ପାଇଁ ॥
ବିଶ୍ବର କରଣ ମାନସ । ଇଚ୍ଛାରେ ହୋଇଲେ ପ୍ରକାଶ ॥
ମଥୁରାପୁରେ ବନ୍ଧଘରେ । ଦେବକୀ ଦେବୀଙ୍କ ଠାବରେ ॥
ତାଙ୍କର ଭକ୍ତିଭାବ ପାଇ । ପ୍ରକାଶ ହେଲେ ତହିଁ ଯାଇ ॥
ଦେବକୀ ଗର୍ଭବାଦ ମାତ୍ର । ସ୍ୱୟଂ ପ୍ରକାଶ ଜଗଦ୍ଭୂତ ॥
ନୋହିଲେ ପ୍ରଭୁ ଜାତ ହୋଇ । ଏମନ୍ତ ଦେଖିଅଛ କାହିଁ ॥
ଶିରରେ କରୀଟ କୁଣ୍ଡଳ । ଶ୍ରୀବତ୍ସଲକ୍ଷ୍ମ ପୀତାମ୍ବର ॥
କୌସ୍ତୁଭ କଟକ କଙ୍କଣ । ମେଖଳା ଆଦି ଆଭରଣ ॥
ତା ଦେଖି ବସୁଦେବ ଡରେ । ଅନେକ ସ୍ତୁତି କଲେ ଖରେ ॥
ତାଙ୍କର ଭକ୍ତିଭାବ ଘେନି । ବାଳକ ତନୁ ହେଲେ ପୁଣି ॥
ତା ଦେଖି ବସୁଦେବ ବେଗେ । ବାଳକ ଘେନିଣ ସରାଗେ ॥
ଗୋପରେ ନନ୍ଦର ମନ୍ଦିରେ । ଛାଡ଼ିଅଇଲେ ଝାଡ଼କାରେ ॥
ନନ୍ଦ ମନ୍ଦିରେ ଭଗବାନ । ରହିଲେ ବାଳରୂପେ ଜାଣ ॥
ସୁଜନେ ଶୁଣ ସାବଧାନେ । ଯେ ନିତ୍ୟବାସୀ ଗୋପୀମାନେ ॥
ରାଧିକା ଚନ୍ଦ୍ରାବଳୀ ତୁଲେ । ଗୋପରେ ଜନମ ଲଭିଲେ ॥
ଯେ ବୃଷଭାନୁଙ୍କ କୁମାରୀ । ସେ ସେ ଶ୍ରୀକୃଷ୍ଣ ମନୋହାରୀ ॥
ପ୍ରଭୁଙ୍କ ହୋଇ ଅନୁଗତ । ଗୋପେ ଲଭିଲେ ଦେବୀ ଜାତ ॥
ଆବର ହୋଇଲେ ଜନମ । ସୁଦାମ ଆଦି ସଖାଗଣ ॥
ଏଥିରେ ସଂଶୟ ନ କର । ଶୁଣିମା ଏଥିର ବିସ୍ତର ॥
ପଦ୍ମପୁରାଣେ ଛନ୍ତି କହି । ନିଜ ଶ୍ରୀମୁଖେ ଆଜ୍ଞା ଦେଇ ॥
ସତ୍ୟଭାମାଙ୍କର ଯେ ଆଗେ । କହିଅଛନ୍ତି ଅନୁରାଗେ ॥
ଶୁଣ ଗୋ ଦେବି ଏ ସୁପତି । ଯେ ସେ ଆମ୍ଭର ମୂଳ ନିତ୍ୟ ॥
ସେ ନିତ୍ୟବାସୀଏଟି ଜାଣ । ରାଧିକା ଆଦି ଗୋପୀଗଣ ॥
ସୁଦାମ ସୁବଳ ଆଦିରେ । ସେ ସଖାଗଣଟି ବେଢ଼ିରେ ॥
ଏମାନେ ନ ସ୍ୱତନ୍ତ୍ର ମୋତେ । ମୋସଙ୍ଗେ ଥାନ୍ତି ଏ ନିରତେ ॥
ଏଜାଣ ମୋର ପ୍ରାଣସର । ତାଙ୍କୁ ମୁ ଥାଇ ଅନୁସର ॥
ତାଙ୍କର ମୋର ଭିନ୍ନ ନାହିଁ । ଏମନ୍ତ ବୋଲି ଜାଣ ସହି ॥
ଏଥିଉତ୍ତାରୁ ସାବଧାନେ । ଶୁଣିମା ସାଧୁଜନମାନେ ॥

ଦଣ୍ଡକବାସୀ ଋଷିଗଣ । ସେହି ଜନ୍ମିଲେ ଗୋପେ ଜାଣ ॥
ପୁରୁଷ ଦେହ ତେଜିକରି । ଗୋପରେ ହୋଇଲେ ଆଭୀରୀ ॥
ଏଭାବେ ଗୋପୀ ଯେ ବହୁତ । ଆସି ହୋଇଲେ ଗୋପେ ଜାତ ॥
ଆଗହୁଁ ହୋଇଥିଲେ ଜାଣ । ଦ୍ୱାଦଶ ବନ ଗୋବର୍ଦ୍ଧନ ॥
ଯମୁନା ଆଦିରେଣ୍ଟି ସର୍ବ । ଗୋରୁ ଗୋପାଳ ବଳଦେବ ॥
ନିତ୍ୟର ବସ୍ତୁର ଯେତେକ । ଗୋପେ ହୋଇଲେ ଆସି ଜାତ ॥
ସେ ଗୋପେ ଥାଇଁ ଭଗବାନ । ଶୋଷିଲେ ପୁତନାର ପ୍ରାଣ ॥
ଶକଟା ପାଦେ କଲେ ହତ । ଶୂନ୍ୟେ ମାଇଲେ ତୃଣାବର୍ତ୍ତ ॥
ଯାମଳାତରୁ ଉପାଡ଼ିଲେ । ଷଣ୍ଢାକୁ ମାରି କଚାଡ଼ିଲେ ॥
ବକର ଚିରିଲେକ ଥଣ୍ଟ । ଅଘାର ବିଦାରିଲେ ପେଟ ॥
ଧେନୁକାସୁର ସଂହାରିଲେ । ପ୍ରଲମ୍ବା ମସ୍ତକ ମୋଡ଼ିଲେ ॥
କାଳିନ୍ଦୀ ଜଳେ ପଶିକରି । କାଳୀୟ ଶିରେ ନୃତ୍ୟକରି ॥
ଗିଳିଲେ ଦାବ ଯେ ଦହନ । ତାରିଲେ କୁବେର ନନ୍ଦନ !
ଇନ୍ଦ୍ର ସଙ୍ଗତେ ବାଦକରି । ତୋଳିଲେ ଗୋବର୍ଦ୍ଧନ ଗିରି ॥
ବସ୍ତ୍ରାହରଣେ ଚଉମାଥ । ଗର୍ବ ତାଙ୍କର କଲେ ହତ ॥
ସକଳ ଗୋପ ବଧୂଗଣ । ରମିଲେ ପ୍ରଭୁ ଭଗବାନ ॥
ଶ୍ରୀବୃନ୍ଦାବନର ଭିତରେ । ନିତ୍ୟ ରାସ ଯେ ତହିଁ କଲେ ॥
ତହିଁ ଉତ୍ତାରୁ ନରହରି । ମଥୁରାପୁରେ ବିଜେ କରି ॥
ରଜକ ପ୍ରାଣ କଲେ ଦୂରି । କୁବୁଜା କଲେକ ସୁନ୍ଦରୀ ॥
ମାଇଲେ କୁବଳୟ କରି । ବେନି ମାଲଙ୍କୁ ଆଦି କରି ॥
ପୁଣି ମାଇଲେ କଂସାସୁର । ସହିତେ ଅନେକ ଅସୁର ॥
ଦେବକୀ ବସୁଦେବ ଦୁହେଁ । ବନ୍ଧ ମୁକତ କରିଦେଲେ ॥
ଉଗ୍ରସେନଙ୍କୁ ରାଜା କରି । ବହୁତ ଲୀଳା ତହିଁ କରି ॥
ପୁଣିହିଁ କେତେକ ଅନ୍ତରେ । ଦ୍ୱାରକାପୁରେ ବିଜେ କଲେ ॥
ଭୀଷ୍ମକ ନନ୍ଦନୀ ରୁକ୍ମିଣୀ । ହରି ଆଣିଲେ ତାଙ୍କୁ ପୁଣି ॥
ସତ୍ରାଜିତ ରାଜାର ଜେମା । ବଧୂ ହୋଇଲେ ସତ୍ୟଭାମା ॥
ପାତାଳେ ଜାମ୍ବବଙ୍କୁ ଜିଣି । ଜାମ୍ବବତୀଙ୍କି ତହୁଁ ଆଣି ॥
ଏ ଆଦି ଅଷ୍ଟ ପାଟବଂଶୀ । ବଧୂ ହୋଇଲେ ହୃଷୀକେଶୀ ॥

ଆବର ଷୋଳ ସହସ୍ର ନାରୀ । ନୃପତିମାନଙ୍କ କୁମାରୀ ॥
ମାରିଲେ ଅନେକ ରାକ୍ଷସ । ଅବନ୍ଧ କଲେକ ଉଶ୍ୱାସ ॥
ଆବର ବହୁତ ଭଗତ । ମାନଙ୍କୁ କଲେକ ମୁକତ ॥
ଦୁର୍ଯ୍ୟୋଧନଙ୍କ ସଭା ତଳେ । ଦ୍ରୌପଦୀ ଦେବୀଙ୍କି ରଖିଲେ ॥
ଅଶ୍ୱତ୍ଥାମାଙ୍କ ଶର ଘାତ । ଠାରୁ ରଖିଲେ ପରୀକ୍ଷିତ ॥
ଗଜକୁ ରଖିଲେକ ଜଳେ । ଚକ୍ରେ କୁମ୍ଭୀର ନାଶ କଲେ ॥
ଏ ଭାବେ ମହିମା ଅପାର । କେ ତାହା କରିବ ଗୋଚର ॥
ଏ ଯେ ଗୋପର ଲୀଳାମାନ । ନିତ୍ୟରେ ଏହି ଲୀଳା ଜାଣ ॥
ଗୋପରେ ଯେମନ୍ତ ସ୍ୱରୂପ । ନିତ୍ୟରେ ଜାଣ ସେହିରୂପ ॥
ଏ ଯେଣୁ ପରମ ଯେ ତତ୍ତ୍ୱ । ଅଟନ୍ତି ଗୋପେ ଗୋପୀନାଥ ॥
ମୀନ ଆଦିରେ ଯେତେ ଜାଣ । ସେ ସବୁ ଅବତାରମାନ ॥
ନବୀନ ଘନ ଯେ ସୁନ୍ଦର । ବରହି ଚୂଳ ପୀତାମ୍ବର ॥
ଶ୍ରୀବତ୍ସ ଅଙ୍କ ଶୋଭିବନ । ବିବିଧ ଆଭରଣମାନ ॥
ତ୍ରିଭଙ୍ଗି ଛନ୍ଦରେ ବିଜୟେ । ମୁରଲୀ ବେଣୁକରେ ଶୋହେ ॥
ଆହୀର ନଟବର ବେଶ । ଭୀମ ମହାପାତ୍ରର ଆଶ ॥

ଇତି ଶ୍ରୀ ହରିଭକ୍ତିଚନ୍ଦ୍ରୋଦୟେ ଭଜନେ ନିତ୍ୟଲୀଳା ବର୍ଣ୍ଣନେ ନାମ ଚତୁସ୍ତ୍ରିଂଶୋଽଧ୍ୟାୟଃ ।

---

## ୩୫ଶ ଅଧ୍ୟାୟ ।

( ନଟାଂଗଲା ବସନ୍ତ )

ସୁଜନେ କର ସାବଧାନ । ଶୁଣିମା ହୋଇ ଏକମନ ॥
ସକଳ କଥା କର ଦୂର । ବେଗେ ଶ୍ରୀକୃଷ୍ଣ ଭକ୍ତି କର ॥
ଯେ କୃଷ୍ଣ ଭକ୍ତିର ସାଧନ । ନିରତେ କର ଦେଇ ମନ ॥
କ୍ଷଣେହେଁ ଅନ୍ତର ନ କର । ହେଲେ ହୋଇବ ଭବୁଁ ପାର ॥
ଲଭିବ ଶ୍ରୀକୃଷ୍ଣଚରଣ । ଏଥିରେ ସଂଶୟ ନ ଘେନ ॥
ଯେ ନିତ୍ୟ ଗୋଲୋକ ମଣ୍ଡଳେ । ରହିବ କୃଷ୍ଣ ସନ୍ନିଧିରେ ॥
ନିତ୍ୟ ବାହାରେ ଯେତେ ଜାଣ । ସକଳ ଅନିତ୍ୟରେ ଶୁଣ ॥
କାଳେ ସକଳେ ଯିବେ ନାଶ । କାହାର ନ ଥିବ ନା ଲେଶ ॥
ଗୃହ କୁଟୁମ୍ବ ଧନ ଜନ । ଯେ ନିତ୍ୟ ଦେହ ସହିତେଣ ॥

ସୁର ଅସୁର ଦେବଲୋକ । ବ୍ରହ୍ମାଣ୍ଡେ ଅଛନ୍ତି ଯେତେକ ॥
ଅବର ବ୍ରହ୍ମାଣ୍ଡ ଯୁଗତେ । ସମସ୍ତ କାରଣ ସହିତେ ॥
ସମସ୍ତେ ହୋଇବେ ଏ ଲୀନ । କେହି ନ ଥିବେ କଷ୍ଟେ ଜାଣ ॥
ନିତ୍ୟରେ ନୁହନ୍ତି ନା କେହି । କାଳେ ଏ ଯିବେ ଆନ ହୋଇ ॥
ଶୁଣିବା ଏଥିର ବିଧାନ । ସୁଜନେ ହୋଇ ସାବଧାନ ॥
ଚୌର ସହସ୍ର ଜାଣ ଯୁଗ । ବ୍ରହ୍ମାଙ୍କ ଦିବସେକ ଭୋଗ ॥
ପୁଣି ଚୌର ସହସ୍ର ରାତି । ସୁଖେ ଶୁଅନ୍ତି ବେଦପତି ॥
ଏ ଚୌର ସହସ୍ର ଯୁଗରେ । ଜଳ ପୂରଇ ବ୍ରହ୍ମାଣ୍ଡରେ ॥
ଦିନ ପ୍ରଳୟ ତାଙ୍କୁ କହି । ଧାତାଙ୍କ ଦିବସ ଅଟଇ ॥
ନିଦ୍ରା ଉପେକ୍ଷି ବେଦପତି । ପ୍ରଭାତ ଚିନ୍ତା ଯେ କରନ୍ତି ॥
ତହୁଁ ଅରେକ ଦିବସରେ । ସୃଷ୍ଟି ସର୍ଜନା ଧାତା କରେ ॥
ଦିବସ ଯାଇ ହେଲେ ରାତି । ପ୍ରଳୟ ପୁଣିହିଁ ହୁଅନ୍ତି ॥
ଏ ଭଳି ତିନିଶ ଷାଠିଏ । ଦିନରେ ବରଷେଟି ହୁଏ ॥
ଏ ଶତ ଅଷ୍ଟମେ ବରଷ । ବ୍ରହ୍ମାଙ୍କ ପୂରଇ ଆୟୁଷ ॥
ବ୍ରହ୍ମ ପ୍ରଳୟ ହୁଏ ଜାଣ । ଯେ ନିଜ ବ୍ରହ୍ମାଣ୍ଡ ତୁଲେଣ ॥
ବ୍ରହ୍ମାଣ୍ଡ ଭିତରେ ଯେ କଥା । ସମସ୍ତେ ହୁଅନ୍ତି ଅନ୍ୟଥା ॥
ବିରାଟ ଦେହେ ପଶେ ଯାଇଁ । ବାହାରେ କିଛିହିଁ ନ ଥାଇ ॥
ଏ କାଳ ହେଲାଟି ଯେତେକ । ଏ ଯେ ବିରାଟ ନିଶ୍ୱାସକ ॥
ନିଶ୍ୱାସ ସଂହରନ୍ତି ଯେବେ । ବ୍ରହ୍ମା ପ୍ରଳୟ ଜାଣ ତେବେ ॥
ପୁଣି ତେତେକ କାଳଯାଏ । ବ୍ରହ୍ମା ପ୍ରଳୟ ହୋଇଥାଏ ॥
ଭଳ ବିରାଟ ବିନୁ ଆନ । କିଛି ନ ଥାନ୍ତି ହାଦେ ଜାଣ ॥
ପୁଣି ସେ ବିରାଟ ନିଶ୍ୱାସ । ବାହ୍ୟକୁ ହୁଅନ୍ତେ ପ୍ରକାଶ ॥
ରୋମ ଯେ ବିବର ପବନେ । କୋଠୀ କୋଠୀ ବ୍ରହ୍ମାଣ୍ଡମାନେ ॥
ବାହାରେ ପ୍ରକାଶ ହୁଅନ୍ତି । ସେହି ପବନ ବଳେ ଯାନ୍ତି ॥
ଏମନ୍ତ ଜାଣ ସେହି କାଳେ । ବ୍ରହ୍ମା ଉପୁଜେ ନାଭି ମୂଳେ ॥
ସେ ପୁଣି ବ୍ରହ୍ମାଣ୍ଡ ଗଢ଼ନ୍ତି । ପାଳନ୍ତି ପୁଣି ନାଶ ଯାନ୍ତି ॥
ସେ ସେହି ନିଶ୍ୱାସ ସଙ୍ଗରେ । ପଶନ୍ତି ସଂହରିବା କାଳେ ॥
ଏଣୁ ସଂହାର କାଳେ ଜାଣ । କେହି ନ ଥାନ୍ତି ହାଦେ ପୁଣ ॥

ଏ ଯେଉଁ ବିରିଞ୍ଚି ନିଶ୍ୱାସ । ବ୍ରହ୍ମାଙ୍କ ଜାଣନ୍ତି ଅୟୁଷ ॥
ବିରିଞ୍ଚି ନିଶ୍ୱାସର ଗତ । ସର୍ଜନା ପ୍ରଳୟ ହୁଅନ୍ତ ॥
ଏ ଭାବେ ଷଡ଼ ନିଶ୍ୱାସରେ । ବିକଳ୍ପା ଜାଣନ୍ତି ବେଦରେ ॥
ଷାଠିଏ ବିକଳ୍ପା ଲବା ପୁଣ । ଷାଠିଏ ଲବାରେ ଦଣ୍ଡେ ଜାଣ ॥
ଷାଠିଏ ଦଣ୍ଡରେ ଦିବସ । ତିରିଶ ଦିବସରେ ମାସ ॥
ବରଷ ବାର ମାସେ ଜାଣ । ଏ ଭାବେ ବହୁକାଳେ ପୁଣ ॥
ବିରିଞ୍ଚି ପ୍ରଳୟନ୍ତି ହୁଏ । ମହାପ୍ରଳୟ ଯାକୁ କହେ ॥
ବିରିଞ୍ଚି ଆପଣା ଇଚ୍ଛାରେ । ଲୀନ ହୁଅନ୍ତି ଅବନୀରେ ॥
ଅବନୀ ଲୀନ ହୁଏ ଜଳେ । ଜଳ ପଶନ୍ତି ଅନଳରେ ॥
ଅନଳ ପଶନ୍ତି ପବନେ । ପବନ ରହେ ଯାଇ ଶୂନ୍ୟେ ॥
ଶୂନ୍ୟ ପଶନ୍ତି ଅହଙ୍କାରେ । ସେ ଅହଙ୍କାର ମହତରେ ॥
ମହତ ପ୍ରକୃତି କି ଯାନ୍ତି । ପ୍ରକୃତି ପୁରୁଷେ ମିଶନ୍ତି ॥
ନିତ୍ୟ ଗୋଲୋକ ବିନୁ ଆନ । କେହି ନ ଥାନ୍ତି ନିଶ୍ଚେ ଜାଣ ॥
ଏ କାଳେ ଯେତେକ ହେବାର । ନିଜମାନସେ ରତ୍ନାକର ॥
ନିତ୍ୟରେ ଛନ୍ତି ଯେତେ ଲୋକ । ତାଙ୍କୁ ଏ ନୁହେ ପଲକେକ ॥
ସେ ମହା ସୁଖେ ଥାନ୍ତି ରହି । ଏ ଭାବେ କୋଟିବାର ଯାଇ ॥
ଏ ଯେଉଁ ନିତ୍ୟର ବାହାରେ । ଅନିତ୍ୟ ଅଛନ୍ତି ସକଳେ ॥
ଜାତ ବିନାଶ ଯହିଁ ହୋନ୍ତି । ସେ ଯେଉଁ ଅନିତ୍ୟ ବୋଲନ୍ତି ॥
ନିତ୍ୟର ଜାତ ମୃତ୍ୟୁ ନାହିଁ । ସର୍ବଦା କାଳେ ଛନ୍ତି ରହି ॥
ଯେତେକ ଅଛନ୍ତି ନିତ୍ୟରେ । ସେ ଜାଣ ନିତ୍ୟନ୍ତି ବେଦରେ ॥
ଶ୍ରୀକୃଷ୍ଣ ଭକ୍ତିଭାବେ କରି । ରହି ଅଛନ୍ତି ନିତ୍ୟପୁରି ॥
କୋଟି ପ୍ରଳୟମାନ ଗଲେ । ନିମିଷ ନ ଜାଣନ୍ତି ଭଲେ ॥
ପରମାନନ୍ଦ ସୁଖ ପ୍ରାପ୍ତି । ନିଶ୍ଚିନ୍ତ ହୋଇଛନ୍ତି ରହି ॥
ଏ ଯେଉଁ ତହିଁକୁ ଯିବାର । ଉପାୟ ମନେ ରତ୍ନାକର ॥
କରି ଶ୍ରୀକୃଷ୍ଣପାଦେ ଭକ୍ତି । ବହୁତ ଲୋକ ଯାଇଛନ୍ତି ॥
ଯେତେକ ଅଛନ୍ତି ତହିଁରେ । ଗଲେଟି ଭକ୍ତିର ବଳରେ ॥
ଭକ୍ତି ବାହାରେ ଜାଣ ଆନ । ଉପାୟ ନାହିଁ ନିଶ୍ଚେ ଜାଣ ॥
ଏ ଆନ ମାର୍ଗରେ ନୁହନ୍ତି । ଶ୍ରମୀ ହୋଇଣ ବାହୁଡ଼ନ୍ତି ॥

ଏ ମାର୍ଗ ଦୁର୍ଗମ ଯୁକତ । ପ୍ରତି ରୋଧକଣ୍ଟ ବହୁତ ॥
କାହାକୁ ନ ହୁଅନ୍ତି ଯାଇ । ବୈଷ୍ଣବ ହନୁଁ ଜାଣ ସେହି ॥
ଏ ହେନ କୃଷ୍ଣ ଭକ୍ତି କର । ଲଭିବ କୃଷ୍ଣ ନିତ୍ୟପୁର ॥
କହିଲା ଭୀମ ମହାପାତ୍ର । କୃଷ୍ଣ ପାଦରେ ଦେଇଚିତ୍ତ ॥
ସେ କୃଷ୍ଣ ଚରଣ ଯୁଗଳ । ପୂର୍ଣ୍ଣକରିବେ ଆଶା ମୋର ॥

ଇତି ଶ୍ରୀ ହରିଭକ୍ତି ଚନ୍ଦ୍ରୋଦୟେ ଭଜନେ ନିତ୍ୟାନିତ୍ୟ ବସ୍ତୁବର୍ଣ୍ଣେ ନାମ ପଞ୍ଚତ୍ରିଂଶୋଽଧ୍ୟାୟଃ ।

---

## ୩୬ଶ ଅଧ୍ୟାୟ ।

( ଉପସଂହାର )

ସୁଜନେ ସାବଧାନେ ଶୁଣ । ଏଥି ଉତ୍ତରୁ ସେ ବିଧାନ ॥
ଏ ଭକ୍ତି ଚନ୍ଦ୍ର ଯେ ଉଦୟ । ସବୁ ଅଟଇ ସୁଧାମୟ ॥
ଏ ଦେଶ ଭାଷା ଗୀତ ଜାଣ । ନାହିଁ କବିତା ଗୁଣମାନ ॥
ଏମନ୍ତ ହେଲେହେଁ ଏଥିରେ । ଆଦର କରିବ ବେଭାରେ ॥
ଏ ହରି ଭକ୍ତି ଗନ୍ଧ ହେନ । ପବିତ୍ର ଅଟଇଟି ପୁଣି ॥
ଭକ୍ତିର ବସ୍ତୁର ବେଭାରେ । ଏଥି ଅଛଇ ପ୍ରତିଠାରେ ॥
ସେ ହେନ ପବିତ୍ର ଏ ଜାଣ । ଯେମନ୍ତେ ପୁଷ୍ପେ ପଟ୍ଟ ପୁଣ ॥
ପୁଷ୍ପ ସଙ୍ଗରୁ ସେ ବିଶେଷ । କେହି ନ ଧରେ ତହିଁ ଦୋଷ ॥
ଆବର କୂପର ଉଦକ । ଦେବତା ସ୍ନାନରେ ପାବକ ॥
ଜିବ ହେନନ୍ତି ବୁଧଜନ । ବିକାର ନ ହେନନ୍ତି ମନ ॥
ଏ ହେନ ଭକ୍ତିର ବସ୍ତୁର । ଥିବାରୁ ଏଥିରେ ଆଦର ॥
କରିବ ସାଧୁଜନମାନେ । ଅନୁରାଗରେ ସାବଧାନେ ॥
ଯେ ଏହା କରିବେ ଶ୍ରବଣ । ଖଣ୍ଡିବେ ଅକାଳ ମରଣ ॥
ଶ୍ରୀକୃଷ୍ଣ ଭକ୍ତି ତାହାଙ୍କର । ନିଶ୍ଚୟେ ହୋଇବ ଆବର ॥
ଖଣ୍ଡିବେ ଭବ ଯେ ବନ୍ଧନ । ଲଭିବେ ଶ୍ରୀକୃଷ୍ଣ ଚରଣ ॥
ଏଥିରେ ସଂଶୟ ନ କର । ଏ କୃଷ୍ଣ ଭକ୍ତିର ବସ୍ତୁର ॥
ଯେ କୃଷ୍ଣ ମହିମା ଶୁଣନ୍ତି । ବେଭାରେ ଲଭେ ସଦଗତି ॥
ସୁଜନେ କୃପାକର ମୋତେ । ମୋ ପ୍ରତିଜନ ଯେ ଯୁଗତେ ॥
ତୁମ୍ଭର ଚରଣର ଦାସ । ସେ ହେନକାଳ ମୋର ଆଶ ॥

କଲ୍ଲି ତୁମ୍ଭ ଚରଣରେ । ଏ ଯେନ ଜାଣିମା ବେଗ୍ରରେ ॥
ପୂର୍ବରୁ କାରୁଣିକ ଥାଇଁ । ତୁମ୍ଭ ଚରଣେ ମତି କାହିଁ ॥
ଏ ଗୁଣି ପୂର୍ବ ହେତୁ ଯେଣ । ଲଭିଲି ତୁମ୍ଭ ପାଦ ବେଣ ॥
ତୁମ୍ଭେ କଲ୍ୟାଣ ମୋତେ କର । ଭକ୍ତି ନିଶ୍ଚଳ ତେବେ ମୋର ॥
ବହୁତ କରଛି ଭରସା । ତୁମ୍ଭେ ପୂରଅ ମୋର ଆଶା ॥
ସେ ପ୍ରଭୁ କରୁଣାସାଗର । ବହୁତ ମହିଁମା ତାଙ୍କର ॥
ସୁନ୍ଦର ପଣେ କୋଟି କାମ । ପାଦତଳକୁ ନୁହେ ସମ ॥
ଯାହାର ଚଉଷଠି ଜାଣ । ମହାପୁରୁଷ ଗୁଣବାନ ॥
ଯାହାର ଅଷ୍ଟାଦଶ ଦୋଷ- । ମାନଙ୍କର ନାହିଁନା ଲେଶ ॥
ଷୋଡ଼ଶ ନାୟିକ ଲକ୍ଷଣ । ଯେଉଁ ପ୍ରଭୁର ଛନ୍ତି ଜାଣ ॥
ବତିଶ ଲକ୍ଷଣ ବେଖରେ । ଅଛନ୍ତି ଯେଉଁ ପ୍ରଭୁଠାରେ ॥
ପାଦତଳରେ ହାଦେ ଜାଣ । ଅଛନ୍ତି ଅଷ୍ଟାଦଶ ଚିହ୍ନ ॥
ଏତେକ ଲକ୍ଷଣ ଯେ ଥାଇଁ । ପୁରୁଷ ଦେଖିଛନ୍ତି କାହିଁ ॥
ଯାହାର ଚରଣ ଠାବର । ମହିମା ଦେବେ ଅଗୋଚର ॥
ଏମନ୍ତ ଜାଣି ତାଙ୍କ ଗୁଣ । ବନ୍ଦୀ ହୋଇଲା ମୋର ମନ ॥
ନିରତେ ଚିନ୍ତା ମୁଁ କରଇ । କେମନ୍ତେ ତାଙ୍କୁ ପାଇବଇଁ ॥
କେ ତାଙ୍କୁ ଦେବ ମୋତେ ଆଣି । କେମନ୍ତେ ପାଇବଇଁ ପୁଣି ॥
କୋହଲେ ତାଙ୍କର ତହିଁକି । କେ ମୋତେ ଯେନିଯିବ ନିକି ॥
ଏହି ଭାବରେ ଉଦବେଗ । ହୁଅଇ ପାଇବାକୁ ବେଗ ॥
ଏ ଯେନ କର ତାଙ୍କ ଭକ୍ତି । ନିରତେ ବଗ୍ଧରଇ ମତି ॥
ଫୁଲ୍ଲେନ୍ଦୀବର କାନ୍ତି ଜାଣ । ଆବର ଇନ୍ଦୁ ଯେ ବଦନ ॥
ବରହି ଅବତଂଶ ଚୂଳ । ଶ୍ରବଣେ ମକର କୁଣ୍ଡଳ ॥
ଶ୍ରୀବତ୍ସ ଲାଞ୍ଛନ ସ୍ଥାବର । ଉଦାର କଉସ୍ତୁଭ ଉର ॥
ପୀତବସନ ଶୋଭାବନ । ମେଖଳା କ୍ଷୁଦ୍ର ଘଣ୍ଟିଗଣ ॥
ଲଲାଟେ ଚନ୍ଦନ ତିଳକ । ହୃଦରେ ବିବିଧ ପଦକ ॥
ବାହୁରେ କଟକି କଙ୍କଣ । ସୁନ୍ଦର ନୂପୁର ଚରଣ ॥
କଦମ୍ବ ପାଦପର ତଳେ । ମଣି ନିର୍ମିତ ବେଦିପରେ ॥
ତ୍ରିଭଙ୍ଗିଛନ୍ଦେ ହୋଇ ଉଭା । ମୁରଲୀ ବେଣୁ କରେ ଶୋଭା ॥

ଘୋଗୋପୀ ମଣ୍ଡଳେ ଆବୃତ । ମୁରଲୀ ବାଦନେ ପଣ୍ଡିତ ॥
ଗୋପୀଙ୍କ ନୟନ କମଳ । ଗୋପୀଙ୍କ ଚରଣ ଯୁଗଳ ॥
ଅନନ୍ତ କୋଟୀ ଯେ ମଦନ । ଯୁବତି-ମାନସ ମର୍ଦ୍ଦନ ॥
ଅଭୀର ନଟବର ବେଶ । ଭୀମଦାସର ତାଙ୍କୁ ଆଶ ॥
ଦ୍ୱାପରଯୁଗ ରଜ ଛାଣ । ଯେ ବୃଷଭାନୁସୁତା ପ୍ରାଣ ॥
ରାସ ଯେ ମଣ୍ଡଳ ନାୟକ । ହତାର ଗତି ଯେ ଦାୟକ ॥
ଅବତାର ଅବଳି ବୀଜ । ନନ୍ଦ ଯେ ଯଶୋଦା ଆତ୍ମଜ ॥
ତାଙ୍କର ଚରଣ ଯୁଗଳ । ଚିନ୍ତା କରଣ ମାନସର ॥
ଜହ୍ଲା ଶିଶୁ ଭୀମ ଦାସ । ଗୀତ ବଗ୍ରରେ ଭକ୍ତି ରସ ॥

ଇତି ଶ୍ରୀ ହରିଭକ୍ତିଚନ୍ଦ୍ରୋଦୟେ ଗ୍ରନ୍ଥ ସମାପ୍ତୌ
ନାମ ଷଟ୍‌ତ୍ରିଂଶୋଽଧ୍ୟାୟଃ ।




PRINTED BY B. S. DAS, MUKUR PRESS, CUTTACK.